ଆଧୁନିକ

# ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ

ନଟବର ସାମନ୍ତରାୟ

ଆଧୂନିକ

# ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ



**ନଟବର ସାମନ୍ତରାୟ**

ଅଧ୍ୟାପକ, ବକ୍‌ସୀ ଜଗବନ୍ଧୁ କଲେଜ,

ଭୁବନେଶ୍ୱର

# ନିଜକଥା

ମୋର ସାହିତ୍ୟ-ସାଧନା ବେଶି ଦିନର ନୁହେଁ । ଗଣି ବସିଲେ ଏହା ହେବ ଦଶ ବର୍ଷ ମାତ୍ର । କିନ୍ତୁ ଏଇ ଦଶ ବର୍ଷର ସାଧନା ଭିତରେ ମୁଁ ଯେଉଁମାନଙ୍କ ସାହିତ୍ୟ ଆଲୋଚନା କରିଛି ସେମାନଙ୍କ ମଧ୍ୟରୁ କାହାରି କାହାରି ସାହିତ୍ୟ-ସାଧନାର ସମୟ ୨୦।୫୦ ବର୍ଷରୁ ମଧ୍ୟ ଅଧିକ । ତେଣୁ ଏ ସାଧନା-ପ୍ରସୂତ ସାହିତ୍ୟର ମୂଲ୍ୟାଙ୍କନ କରିବା ପାଇଁ ଦଶଟି ବର୍ଷ ଆଦୌ ଯଥେଷ୍ଟ ନୁହେଁ । ତଥାପି ମୋର ସମସ୍ତ ଶକ୍ତି ଓ ଭକ୍ତି ଦେଇ ଏ ସାହିତ୍ୟ ଯେପରି ବିଶ୍ଳେଷଣ କରିଛି ତାହା କେତେଦୂର ଯଥାର୍ଥ ଓ ବିଜ୍ଞାନସମ୍ମତ ତାର ବିଚାରକ ହେଉଛନ୍ତି ଏ ଦେଶର ପାଠକପାଠିକାମଣ୍ଡଳୀ । ସେଇମାନଙ୍କ ବିଚାର ପାଇଁ ମୁଁ ଏ ପୁସ୍ତକଟିକୁ ଜନସାଧାରଣଙ୍କ ଆଗରେ ଉପସ୍ଥାପନ କରୁଛି ।

ପୁସ୍ତକଟିରେ ଥିବା କାଳ-ବିଭାଗ ମୋର ନିଜସ୍ୱ । ଆଲୋଚନାର ସୁବିଧା ପାଇଁ ମୁଁ ବାଧ୍ୟହୋଇ ଏ ବିଭାଗ କରିଛି । ସମୟ-ସ୍ରୋତର ପରିବର୍ତ୍ତନ ସଙ୍ଗେ ସାହିତ୍ୟର ରଙ୍ଗ କିପରି ବଦଳି ଯାଏ ତାହା ସ୍ପଷ୍ଟ ଜାଣିବା ପାଇଁ "ସମୟ" ଓ "ସାହିତ୍ୟ-ସୃଷ୍ଟି" ଏ ଉଭୟଙ୍କୁ ଏକସଙ୍ଗେ ଅଧ୍ୟୟନ କରିବା ଉଚିତ । ଏ ପୁସ୍ତକଟିର ଆଦ୍ୟପ୍ରାନ୍ତ ମୁଁ ଏହାର ଉପରେ ବିଶେଷ ଜୋର ଦେଇଛି । ସାହିତ୍ୟର ଅନ୍ତଃ-ସୌନ୍ଦର୍ଯ୍ୟ ଅବବୋଧ ସମୟରେ ଆଲୋଚନାର ଏ ଦୃଷ୍ଟିଭଙ୍ଗୀ ଯେ ଏକାନ୍ତ ଅପରିହାର୍ଯ୍ୟ, ଏ ବିଶ୍ୱାସ ପାଠକପାଠିକାଙ୍କ ମନରେ ଏ ପୁସ୍ତକ ଜନ୍ମାଇ ପାରିଲେ ମୋର ସମସ୍ତ ଅଧ୍ୟବସାୟ ସାର୍ଥକ ହୋଇଛି ବୋଲି ଭାବିବି ।

ପୁସ୍ତକଟିରେ କେତେକ ପ୍ରମାଦ ଥାଇପାରେ । ସହୃଦୟ ପାଠକମାନେ ମୋତେ ତାହା ଦେଖାଇ ଦେଲେ ମୁଁ ପରବର୍ତ୍ତୀ ସଂସ୍କରଣରେ ସଂଶୋଧନ କରିନେବ । ଶ୍ରୀପ୍ରଫୁଲ୍ଲ କୁମାର ଧଳ ସ୍ୱତଃ ପ୍ରବୃତ୍ତ ହୋଇ ଏ ପୁସ୍ତକଟି ପ୍ରକାଶ କରିଛନ୍ତି । ମୋର ପୂଜ୍ୟପାଦ ଗୁରୁଦେବ ଶ୍ରୀ ସଦାଶିବ ମିଶ୍ର ଏ ପୁସ୍ତକକୁ ତାଙ୍କ ନାମରେ ଉତ୍ସର୍ଗ କରିବା ପାଇଁ ମୋତେ ଅନୁମତି ଦେଇଛନ୍ତି । ଏ ଉଭୟଙ୍କ ଠାରେ ମୁଁ ଚିରଦିନ କୃତଜ୍ଞ ରହିଲି । ଇତି ।

କଟକ
ତା୧୯ । ୯ । ୬୯

ନଟବର ସାମନ୍ତରାୟ

# ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ



---

# ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ

**ପ୍ରାଗ୍‌ଭାଷ** :—୧୮୦୩ ସାଲ ଡିସେମ୍ବର ୧୭ ତାରିଖ ଶନିବାର ଓଡ଼ିଶା ଭାଗ୍ୟ-ପଟପରିବର୍ତ୍ତନର ଏକ ଅବିସ୍ମରଣୀୟ ଦିବସ । ବେରାର ରାଜା ରଘୁଜୀ ଭୋଁସଲ୍ ଦେଓଗାଁ ଶାନ୍ତି ଚୁକ୍ତିରେ ଆବଦ୍ଧ ହୋଇ ଓଡ଼ିଶାର ରାଜନୈତିକ ଶାସନଭାର କମ୍ପାନୀ ସରକାରଙ୍କ ହସ୍ତରେ ସେଇଦିନ ସମର୍ପଣ କରି ଦେଇଥିଲେ । ମିସନାରୀମାନଙ୍କର ପ୍ରଥମ ଆଧୁନିକ ସ୍କୁଲ (୧୮୨୨), କମ୍ପାନୀ ସରକାରଙ୍କ ଶିକ୍ଷାନୀତି ପ୍ରୟୋଗ ହେତୁ ପୁରୀ ଇଂରାଜୀ ସ୍କୁଲ (୧୮୩୫), କଟକ ଇଂରାଜୀ ସ୍କୁଲ (୧୮୪୧) ଓ ୮ଟି ହାର୍ଡିଞ୍ଜ ସ୍କୁଲ (୧୮୪୫) ପ୍ରତିଷ୍ଠିତ ହେବାରୁ ଏ ଦେଶ ଲୋକଙ୍କ ଚିନ୍ତା ଜଗତରେ କ୍ରମଶଃ ଏକ ବିରାଟ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା । ରାଜନୈତିକ ପଟ ପରିବର୍ତ୍ତନ ହେତୁ, ସମୟକ୍ରମେ, ଏ ଦେଶର ସାମାଜିକ, ଧର୍ମ ଓ ଶିକ୍ଷାଗତ ଜୀବନରେ ଏକ ଅଭୂତପୂର୍ବ ପରିବର୍ତ୍ତନ ସମ୍ପାଦିତ ହୋଇଥିଲା । ତାର ଅବିସ୍ମରଣୀୟ ଓ ଦୁର୍ଲଂଘନୀୟ ପରିଣତି ସ୍ୱରୂପ ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶ ଲାଭ କରିଥିଲା । ପ୍ରାକ୍ ବ୍ରିଟିଶ ଯୁଗରେ ଏ ଦେଶ ସାହିତ୍ୟ ଥିଲା ଏକମୁଖୀ । ଓଡ଼ିଆ କାଳ୍ପନିକ କାବ୍ୟ ସାହିତ୍ୟ ଓ ବୈଷ୍ଣବ ସାହିତ୍ୟର ପ୍ରଧାନ ପ୍ରାଣ-କେନ୍ଦ୍ର ଥିଲେ ସଂସ୍କୃତ କାବ୍ୟ-ସାହିତ୍ୟ, ବ୍ରଜବୋଲି ଓ ବଙ୍ଗଳା ପଦ୍ୟାବଳୀ ସାହିତ୍ୟ ଧାର୍ଦ୍ଧ ସାଙ୍ଗେ

ବହୁଶତ ବର୍ଷ ଧରି ଏ ଦେଶର ଗଣ-ଜୀବନ-ସ୍ରୋତ ଏକ ଧାରାରେ ପ୍ରବାହିତ ହେଉଥିଲା । ଗତାନୁଗତିକ ଭାବେ ପ୍ରବାହିତ ହେଉଥିବା ଦେଶର ଶିକ୍ଷା, ସଂସ୍କୃତି, ସଭ୍ୟତା ବା ଚିନ୍ତାଧାରା ଭିତରେ ବିଦେଶୀ ଶାସକର ସଭ୍ୟତା ବା ଚିନ୍ତାଧାରା କୌଣସି ସୁସ୍ପଷ୍ଟ ପରିବର୍ତ୍ତନ ଆଣି ଦେଇ ନ ଥିଲା । ବୈଚିତ୍ର୍ୟହୀନ ସାମାଜିକ ଜୀବନ ଓ ପାରମ୍ପରିକ କାବ୍ୟ-ନିର୍ମାଣର ଲକ୍ଷ୍ୟ ଏ ଦେଶର ଅତୀତ ସାହିତ୍ୟକୁ ଏକ ନିର୍ମମ ଗତାନୁଗତିକ ରୂପ ପ୍ରଦାନ କରିଥିଲା । ଇଂରାଜ ଅଧିକାର ପରେ, ସମୟକ୍ରମେ, ଶିକ୍ଷା ଓ ନୂତନ ଚିନ୍ତାର ପ୍ରବର୍ତ୍ତନ ହେତୁ ଏ ଦେଶର ଗଣଜୀବନ ତଥା ସାହିତ୍ୟର ଆଙ୍ଗିକ ଓ ଆତ୍ମିକ ରୂପ-ବିଭବ ଭିତରେ ଅଚିନ୍ତନୀୟ ପରିବର୍ତ୍ତନ ସମ୍ପାଦିତ ହୋଇଥିଲା । ଏହି ପରିବର୍ତ୍ତନର ପ୍ରଧାନ ହେତୁ ହେଉଛି ପ୍ରାଚ୍ୟ-ପାଶ୍ଚାତ୍ୟ ଶିକ୍ଷା-ସଭ୍ୟତାର ସଂଘର୍ଷ । ଭକ୍ତକବି ଭକ୍ତଚରଣ ଦାସ (ଅଷ୍ଟାଦଶ ଶତାବ୍ଦୀ)ଙ୍କ 'କଳାକଳେବର ଚଉତିଶା' ଓ ଭକ୍ତକବି ମଧୁସୂଦନ ରାଓଙ୍କ 'ଭାରତ ଭାବନା' (୧୮୮୩) କବିତା ଦୁଇଟିକୁ ତୁଳନାତ୍ମକ ଭାବେ ବିଚାର କଲେ ଓଡ଼ିଆ ମଧ୍ୟଯୁଗୀୟ ଓ ଆଧୁନିକ ସାହିତ୍ୟ ଭିତରେ ସୃଷ୍ଟିର ସ୍ୱରୂପ ଓ ଲକ୍ଷ୍ୟ ଭିତରେ କିପରି ସ୍ୱାତନ୍ତ୍ର୍ୟ ଥିଲା ତାହା ଆମେ ସହଜରେ ଅନୁଭବ କରି ପାରିବୁଁ । 'କଳାକଳେବର ଚଉତିଶା' ରାମକେଶୀ ବୃତ୍ତ (୯+୭=୧୬ ଅକ୍ଷର)ରେ ଗୋପୀ-କୃଷ୍ଣ ପ୍ରେମ ପ୍ରଖ୍ୟାପନ କରେ । ଏହାର ଭାବ, ଅଳଂକାରର ସମାବେଶ, ଛନ୍ଦ ଓ ବିଷୟବସ୍ତୁ ପ୍ରତ୍ୟେକଟି ମଧ୍ୟଯୁଗୀୟ ସାହିତ୍ୟ-ପରମ୍ପରା ଦ୍ୱାରା ପ୍ରଭାବିତ । ରାମାୟଣ, ମହାଭାରତ କିମ୍ବା ଭାଗବତ କିପରି ମଧ୍ୟଯୁଗୀୟ ସାହିତ୍ୟର ପ୍ରାଣକେନ୍ଦ୍ର ଥିଲା ତାହା ଏଇଥିରୁ ପ୍ରମାଣିତ ହେଉଛି । ଅପର ପକ୍ଷରେ "ଭାରତ ଭାବନା" ସ୍ପେନ୍‌ସରିୟାନଷ୍ଟାଞ୍ଜାର ଛନ୍ଦ

ନିୟମରେ ରଚିତ । ଏଥିରେ ଜାଂଶିପୂତା ଭାବ ଭାରତର ଅଶାତ ଇତିହାସକୁ କେନ୍ଦ୍ରକରି ଗତିମୁଖର । ଏହାର ଏଇ ଆଙ୍ଗିକ ରୂପ ବିଭିବିବିଦେଶୀ ସାହିତ୍ୟରୁ ଆମାତ । ଏହାର ସ୍ୱରଝଙ୍କାର, କବିତା ମାଧୁର୍ଯ୍ୟ, ଭାଷାର ନିରାଡ଼ମ୍ବର ରୂପ, ଭାବ-ଅଭିବ୍ୟକ୍ତିର ପ୍ରାକୃତିକତା ଏ ଦେଶ ସାହିତ୍ୟରେ ସଂପୂର୍ଣ୍ଣ ନୂତନ । ଯେଉଁ ଜାଶିପୂତା ଭାବକୁ କେନ୍ଦ୍ରକରି ଏ କବିତା ରଚିତ, ସେ ଭାବ ଏ ଦେଶ ମାଟିରେ, ଅନ୍ତତଃ ସାହିତ୍ୟ କ୍ଷେତ୍ରରେ, ଏକ ନୂତନ ଅମଦାନି ପଦାର୍ଥ । ଗତ ଦେଡ଼ଶତ ବର୍ଷ ଭିତରେ ବିଭିନ୍ନ ସମୟରେ ବିଭିନ୍ନ ଚିନ୍ତାଧାରା, ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରବେଶ କରି ଏ ସାହିତ୍ୟକୁ ଯେଉଁ ବିଚିତ୍ର ରୂପ ପ୍ରଦାନ କରିଛି ତାହା ବାସ୍ତବିକ ଅଭୂତପୂର୍ବ, ଅଭିନବ ଓ ବିସ୍ମୟକର ।

**ଆଧୁନିକ ସାହିତ୍ୟ ଏକ ଅର୍ଥରେ ସହର ସାହିତ୍ୟ**— ଦେଶର ରାଜନୈତିକ ପରିବର୍ତ୍ତନ ସଙ୍ଗେ ସଙ୍ଗେ ବିଦେଶୀ ଶାସକର ଶାସନ-ସଂସ୍ଥା ପ୍ରଥମେ ସହରମାନଙ୍କରେ କେନ୍ଦ୍ରୀଭୂତ ହୋଇଥିଲା । ସେତେବେଳେ ସହରହିଁ ଥିଲା ଜନ-ଜୀବନର ଏକମାତ୍ର ନିୟାମକ ଓ ଗତିନିର୍ଦ୍ଧାରକ । ଶାସକର ଶାସନକଳ ସହିତ ଆଧୁନିକ ଶିକ୍ଷା ପ୍ରସାର ସମୟକ୍ରମେ ସହରମାନଙ୍କରେ ପ୍ରଥମେ ପ୍ରବର୍ତ୍ତିତ ତଥା ପରୀକ୍ଷିତ ହୋଇଥିଲା । ଫଳରେ ଆଧୁନିକ ସାହିତ୍ୟ କେବଳ ସହର-ଜୀବନଠାରେ ଆବଦ୍ଧ ହୋଇ ରହିଗଲା । ଆଧୁନିକ ଶିକ୍ଷାପ୍ରାପ୍ତ ଏକ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ସହରରେ ଅଭ୍ୟୁଦୟ ଲାଭ କରି ବିଦେଶୀ ସାହିତ୍ୟର ଅନୁ-ସରଣରେ ଏକ ନୂତନ ସାହିତ୍ୟ ସୃଷ୍ଟିକଲା । ତେଣୁ ଆଧୁନିକ ସାହିତ୍ୟ ଏକ ଅର୍ଥରେ ସହର ସାହିତ୍ୟ ବ୍ୟତୀତ ଅନ୍ୟ କିଛି

ନୁହେଁ । ପ୍ରଥମ ଯୁଗରେ ପଲ୍ଲୀଜୀବନ ତଥା ଗଣଜୀବନ ସହିତ ଏ ସାହିତ୍ୟର କୌଣସି ସମ୍ପର୍କ ନ ଥିଲା । ପରବର୍ତ୍ତୀ ସମୟରେ ଏ ସମ୍ପର୍କର ସ୍ୱରୂପ ବଦଳିଯିବା ହେତୁ ସାହିତ୍ୟରେ ମଧ୍ୟ ନୂତନତା ଦେଖାଯାଇଥିଲା । (ଆଧୁନିକ ଶିକ୍ଷା ପ୍ରଣାଳୀ, ତଦୁପଯୋଗୀ ଆଧୁନିକ ପାଠ୍ୟପୁସ୍ତକ, ଆଧୁନିକ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀ ଓ ଆଧୁନିକ ସାହିତ୍ୟ, ଏ ଚାରୋଟିର ଘନିଷ୍ଠ ସମ୍ପର୍କ କେହି ଅସ୍ୱୀକାର କରି ପାରିବେନାହିଁ । ଊନବିଂଶ ଶତାବ୍ଦୀରେ ଭାରତର ଯେଉଁ ପ୍ରଦେଶରେ ଆଧୁନିକ ଶିକ୍ଷାପ୍ରଣାଳୀ ଯେତେ ଆଗରୁ ଆରମ୍ଭ ହୋଇଛି ସେ ଦେଶରେ ଆଧୁନିକ ପାଠ୍ୟପୁସ୍ତକ ଓ ସେହି ପାଠ୍ୟପୁସ୍ତକରେ ଶିକ୍ଷିତ ତଥା ଦୀକ୍ଷିତ ଏକ ମଧ୍ୟବିତ୍ତଶ୍ରେଣୀ ସେଠାରେ ସେତେ ଶୀଘ୍ର ଅଭ୍ୟୁଦୟ ଲାଭ କରିଛି । ଫଳରେ ସେ ଦେଶର ଆଧୁନିକ ସାହିତ୍ୟ ଶୀଘ୍ର ବିକାଶଲାଭ କରିବାକୁ ସମର୍ଥ ହୋଇପାରିଛି । ବଙ୍ଗ ଦେଶ କଥା ଆଲୋଚନା କଲେ ଏ ଉକ୍ତିର ସତ୍ୟତା ସହଜରେ ପ୍ରମାଣିତ ହୋଇପାରିବ । ଚିର ଅବହେଳିତ ଓଡ଼ିଶା ପ୍ରଦେଶରେ ଶିକ୍ଷାର ପ୍ରସାର ନ ହୋଇଥିବା ହେତୁ ଏ ଦେଶର ସେଇ ମଧ୍ୟବିତ୍ତଶ୍ରେଣୀ ଓ ଆଧୁନିକ ସାହିତ୍ୟ ବ୍ରିଟିଶ ଶାସନର ଊର୍ଦ୍ଧ୍ୱ ୭୦ ବର୍ଷ ପରେ ଦେଖା ଦେଇଥିଲା । ଆଧୁନିକ ଓଡ଼ିଆ ସାହିତ୍ୟ କହିଲେ ଯାହା ବୁଝାଯାଏ ତାହା ଯଥାର୍ଥରେ ୧୮୭୦ ସାଲ ପରେ ଜନ୍ମଲାଭ କରିଥିବାର ଦେଖିବାକୁ ମିଳେ ।

**ମିସନାରୀ ଯୁଗ ବା ରୁଚି ପରିବର୍ତ୍ତନର ପ୍ରଥମପର୍ଯ୍ୟାୟ (୧୮୦୩-୧୮୪୧):**—କେରି, ମାର୍ଶମାନ ଓ ଓ୍ୱାର୍ଡ ବଙ୍ଗଳା ଗଦ୍ୟକୁ ଯେପରି ଏକ ବଶିଷ୍ଟରୂପ ଦାନ କରିଥିଲେ ସେପରି କେରି ଓ

ଓ୍ୱାର୍ଡ଼ ଓଡ଼ିଆ ବାଇବେଲର ସମ୍ପାଦନା ଓ ଧର୍ମ ସମ୍ପର୍କୀୟ କେତେକ ପୁସ୍ତିକା ପ୍ରଣୟନ କରି ଓଡ଼ିଆ ଗଦ୍ୟ ବିକାଶର ମୂଳଭିତ୍ତି ସ୍ଥାପନ କରିଥିଲେ । ୧୮୦୪ ସାଲ ସେପ୍ଟେମ୍ବର ତା ୨୦ ରିଖରେ ଫୋର୍ଟ-ଉଇଲିୟମ୍ କଲେଜର କାର୍ଯ୍ୟବିବରଣୀରେ ଉଇଲିୟମ୍ କେରିଙ୍କ ସହାୟତାରେ ପୁରୁଷୋତ୍ତମଙ୍କଦ୍ୱାରା ଅନୂଦିତ ଓଡ଼ିଆ ବାଇବେଲ ମୁଦ୍ରଣପାଇଁ ପ୍ରସ୍ତୁତ ଥିବାର ଘୋଷଣା କରାଯାଇଥିଲା । ୧୮୦୯ ସାଲରେ ନିଉଟେଷ୍ଟାମେଣ୍ଟ (୧୦୦୦ ଖଣ୍ଡ); ୧। ୧୧ ସାଲରେ ପ୍ରଫେଟିକାଲ ବୁକ୍ସ (୧୦୦୦ ଖଣ୍ଡ); ୧୮୧୪ ସାଲରେ ହିଷ୍ଟ୍ରିକାଲ ବୁକ୍ସ ( ୧୦୦୦ ଖଣ୍ଡ ); ୧୮୧୫ ସାଲରେ ପେଣ୍ଟାଟିଉ (୧୦୦୦ ଖଣ୍ଡ); ୧୮୨୨ ସାଲରେ ନିଉଟେଷ୍ଟାମେଣ୍ଟ (୨ୟ ସଂସ୍କରଣ ୪୦୦୦ ଖଣ୍ଡ); ୧୮୩୨ ସାଲରେ ପେଣ୍ଟାଟିଉ (୨ୟ ସଂସ୍କରଣ—୨୦୦୦ଖଣ୍ଡ) ସହିତ ବହୁ ସଂଖ୍ୟାରେ କ୍ଷୁଦ୍ରକ୍ଷୁଦ୍ର ଧର୍ମପୁସ୍ତକ ଓଡ଼ିଆରେ ଏହି ମିଶନାରୀମାନେ ଅନୁବାଦ କରିଥିଲେ । କିନ୍ତୁ କେରି ସାହେବଙ୍କର କର୍ମକ୍ଷେତ୍ର ଥିଲା ବଙ୍ଗପ୍ରଦେଶ; ତେଣୁ ଶ୍ରୀରାମପୁର ତଥା କଲିକତାରେ ଥାଇ ସେ ବଙ୍ଗଳାପାଇଁ ଯେପରି କାମକରି ପାରିଥିଲେ ଓଡ଼ିଆପାଇଁ ସେପରି କିଛି କରିବାକୁ ସୁବିଧା ପାଇ ପାରି ନଥିଲେ । ଖ୍ରୀଷ୍ଟଧର୍ମ ପ୍ରଚାର ଉଦ୍ଦେଶ୍ୟରେ ବିଭିନ୍ନ ଭାଷାଭାଷୀ ପଣ୍ଡିତଙ୍କ ସାହାଯ୍ୟରେ ଯେଉଁ ୩୫ଟି ଭାରତୀୟ ଭାଷାରେ ସେ ବାଇବେଲ୍ ଅନୁବାଦ କରିଥିଲେ ସେଥିରୁ ଓଡ଼ିଆଭାଷା ଥିଲା ଅନ୍ୟତମ । ଓଡ଼ିଆ ପଣ୍ଡିତ ପୁରୁଷୋତ୍ତମ ଓ ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାରଙ୍କ ସହାୟତାରେ ସେ ଓଡ଼ିଆ ଅନୁବାଦ କର୍ମରେ କେବଳ ଅଗ୍ରସର ହୋଇଥିଲେ । ଓଡ଼ିଆ ଗଦ୍ୟ ଓ ପାଠ୍ୟପୁସ୍ତକ ରଚନାର ଯଥାର୍ଥ ନେତୃତ୍ୱ ନେଇ-ଥିଲେ ପରବର୍ତ୍ତୀ କାଳର ମିସନାରୀ ଆମସ ସଟନ । ୧୮୧୩ ସାଲର କମ୍ପାନୀ-ଘୋଷଣା ଅନୁସାରେ କମ୍ପାନୀ ଶାସିତ ଅଞ୍ଚଳରେ ଶିକ୍ଷା

ପ୍ରସାରପାଇଁ ଏକଲକ୍ଷ ମୁଦ୍ରା ବ୍ୟୟର ବନ୍ଦୋବସ୍ତ ଥିଲେ ସୁଦ୍ଧା ବହୁ ବର୍ଷ ଧରି ଓଡ଼ିଶା ଏଇ ଅର୍ଥରୁ ବଞ୍ଚିତ ହୋଇ ରହିଥିଲା । ସମୟକ୍ରମେ ଏଇ ଅର୍ଥବ୍ୟୟର ପରିମାଣ ବୃଦ୍ଧିଲାଭ କରିଥିଲା; କିନ୍ତୁ ଓଡ଼ିଶା ପ୍ରତି ସରକାରଙ୍କର କୌଣସି ଦୃଷ୍ଟି ପଡ଼ି ନଥିଲା । ମିସନାରୀମାନେ ପ୍ରଥମେ ୧୮୨୨ ସାଲ ଜୁନଠାରୁ ୧୯୨୩ ସାଲ ଡିସେମ୍ବର ଭିତରେ ୧୫ଟି ଦେଶୀୟ ବିଦ୍ୟାଳୟ ପ୍ରତିଷ୍ଠାକରି ଆଧୁନିକ ଶିକ୍ଷା ପ୍ରସାରର ମୂଳଭିତ୍ତି ଦେଇଥିଲେ । ବଦାନ୍ୟଲୋକ-ମାନଙ୍କଠାରୁ ଆର୍ଥିକ ସାହାଯ୍ୟ ନେଇ ଏମାନେ ଏ ଦେଶରେ ନୂତନ ଜ୍ଞାନାଲୋକ ବିତରଣ ପାଇଁ ଅସୀମ ଧୈର୍ଯ୍ୟର ସହ ଯେଉଁ କାର୍ଯ୍ୟ କରିଥିଲେ ତାହା ପୂର୍ବରୁ ଏ ଦେଶରେ ଦେଖାଦେଇ ନଥିଲା । ସେଥିପାଇଁ ଏମାନେ ଚିରଦିନ ଏ ଜାତି ନିକଟରେ ନମସ୍ୟ ହୋଇ ରହିଥିବେ । ଦେଶୀୟ ଲୋକଙ୍କ ମଧ୍ୟରେ ଦେଶୀୟ ଭାଷାରେ ଧର୍ମପ୍ରଚାର କରିବା ମିସନାରୀମାନଙ୍କର ପ୍ରଧାନ ଲକ୍ଷ୍ୟ ଥିବାରୁ ଏମାନେ ଏ ଦେଶଭାଷା ଶିକ୍ଷା କରିବାକୁ ବାଧ୍ୟ ହୋଇଥିଲେ । ବ୍ୟାକରଣ ଓ ଅଭିଧାନ, ଏ ଉଭୟ ହେଉଛି ଭାଷା ଜ୍ଞାନଲାଭର ପ୍ରଥମ ସୋପାନ । ତେଣୁ ସଟନ ସାହେବ ଇଂରାଜୀରେ ଓଡ଼ିଆ ବ୍ୟାକରଣ (୧୮୩୧) ଓ ପରବର୍ତ୍ତୀ ସମୟରେ ଅଭିଧାନ (୧୮୪୧) ସଂକଳନ କରିଥିଲେ । କମ୍ପାନୀ ସରକାର ପୁରୀରେ ଗୋଟିଏ ଇଂରାଜୀ ସ୍କୁଲ (୧୮୩୫) ପ୍ରତିଷ୍ଠା କରିବା ବ୍ୟତୀତ ୧୮୪୦ ସାଲ ପର୍ଯ୍ୟନ୍ତ ଶିକ୍ଷା-ପ୍ରସାର ଦିଗରେ କୌଣସି ଉଦ୍ୟମ କରି ନଥିଲେ । ବିଦ୍ୟାଳୟ ପ୍ରତିଷ୍ଠା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କପାଇଁ ସଟନ ସାହେବ ପାଠ୍ୟ-ପୁସ୍ତକ ରଚନାରେ ମନ ବଳାଇଥିଲେ । ପଦାର୍ଥ ବିଦ୍ୟାସାର (୧୮୩୨) ଓ ଇତିହାସ (୧୮୩୯) ନାମକ ଦୁଇଟି ଓଡ଼ିଆ ପୁସ୍ତକ ୧୮୪୧ ସାଲ ପର୍ବରୁ ସେ ରଚନା କରିଥିବାର ଦେଖିବାକୁ ମିଳେ ।

ନୀତିକଥା (୩ୟ ସଂସ୍କରଣ – ୧୮୪୦) ଓ ଓଡ଼ିଆରେ ଭୂଗୋଳ (୧୮୩୯) ନାମକ ଯେଉଁ ଦୁଇଟି ପୁସ୍ତକ ସେ ସମୟରେ ବିଦ୍ୟାଳୟରେ ପ୍ରଚଳିତ ଥିଲା ତାହା ସଟନ ସାହେବଙ୍କର ବୋଲି ଅନୁମିତ ହୁଏ । କାରଣ ପାଦ୍ରୀମାନଙ୍କ ମଧ୍ୟରୁ କେବଳ ସଟନହିଁ ସେ ସମୟରେ ପାଠ୍ୟ-ପୁସ୍ତକ ଲେଖୁଥିଲେ । କଟକ ଇଂରାଜୀସ୍କୁଲ (୧୮୪୧ ସାଲରୁ କମ୍ପାନୀ ହାତକୁ ନେଇଥିଲା) ର ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣ ମଧ୍ୟ ଗୋଟିଏ ଓଡ଼ିଆ ବ୍ୟାକରଣ (୧୮୪୧) ଲେଖିଥିଲେ । କେତୋଟି ବିଦ୍ୟାଳୟ ପ୍ରତିଷ୍ଠା ଓ କେତୋଟି ପାଠ୍ୟପୁସ୍ତକ ରଚନା କରିବାଦ୍ୱାରା ମିସନାରୀ-ମାନେ ଶିକ୍ଷାପ୍ରସାରର ଗୋଟାଏ ମୂଳପତ୍ତନ ଦେବା ବ୍ୟତୀତ ଏ ଦିଗରେ ଅଧିକ ଅଗ୍ରସର ହୋଇ ପାରି ନ ଥିଲେ । ତାର କାରଣ ସେମାନଙ୍କର ସମସ୍ତ ଶକ୍ତି ଧର୍ମପ୍ରଚାରରେ ବ୍ୟୟିତ ହେଉଥିଲା । ବିଦ୍ୟାଳୟ ପ୍ରତିଷ୍ଠା, ପାଠ୍ୟପୁସ୍ତକ ରଚନା, ମୁଦ୍ରାଯନ୍ତ୍ର ସ୍ଥାପନ ଓ ପତ୍ରିକା ସଂପାଦନା—ସେମାନେ ଏଇ ଚାରୋଟି ଉପାୟକୁ ଧର୍ମପ୍ରଚାରର ପ୍ରଧାନ ଅସ୍ତ୍ରରୂପେ ଗ୍ରହଣ କରି ନେଇଥିଲେ । ଆମର ଆଲୋଚ୍ୟ ଯୁଗରେ (୧୮୨୨-୪୧) କଟକରେ ମିଶନପ୍ରେସ (୧୮୩୭) ପ୍ରତିଷ୍ଠିତ ହୋଇଥିଲା । ଫଳରେ ଧର୍ମ ସମ୍ପର୍କୀୟ ତଥା ପାଠ୍ୟପୁସ୍ତକ ପ୍ରକାଶ ପାଇଁ ଏମାନେ ଆଉ ଶ୍ରୀରାମପୁରପ୍ରେସ ଉପରେ ନିର୍ଭର କଲେ ନାହିଁ । ମିସନାରୀମାନେ ଏ ଦେଶର ଯେଉଁମାନଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷା ଦେଲେ ସେମାନେ ଏ ଦେଶବାସୀମାନଙ୍କ ଆଖିରେ ଜାତିଚ୍ୟୁତ ବୋଲି ବିବେଚିତ ହେଲେ; ଫଳରେ ସେମାନେ ଏକ ସ୍ୱତନ୍ତ୍ର ଗୋଷ୍ଠୀରେ ପରିଣତ ହେଲେ । ହିନ୍ଦୁସମାଜ ମଧ୍ୟରେ ବାସ କରୁଥିବା ଖ୍ରୀଷ୍ଟିୟାନ ସଂପ୍ରଦାୟଭୁକ୍ତ ବ୍ୟକ୍ତି ଓ ସେମାନଙ୍କ ସନ୍ତାନମାନଙ୍କ ଭବିଷ୍ୟତ ଦେଖିବା ଥିଲା ମିସନାରୀମାନଙ୍କର ପ୍ରଥମ ନୈତିକ କର୍ତ୍ତବ୍ୟ । ଏଇ କର୍ତ୍ତବ୍ୟ ସଂପାଦନ ପାଇଁ ସେମାନେ ନବଦୀକ୍ଷିତ

ଖ୍ରୀଷ୍ଟିୟାନମାନଙ୍କ ସନ୍ତାନଙ୍କୁ ଶିକ୍ଷାଦେବା ଉଦ୍ଦେଶ୍ୟରେ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଶିକ୍ଷାପ୍ରସାର, ସେହି ହେତୁରୁ, ମିସନାରୀମାନଙ୍କ ପକ୍ଷରେ ଧର୍ମପ୍ରଚାରର ଏକ ସହଜ ପନ୍ଥା ଥିଲା । ସେଥିପାଇଁ ସେମାନେ ବାଧ୍ୟହୋଇ ପାଠ୍ୟପୁସ୍ତକ ରଚନା କରିଥିଲେ । ଯେଉଁ ଉଦ୍ଦେଶ୍ୟ ରଖି ମିସନାରୀମାନେ ଏଇ ପାଠ୍ୟପୁସ୍ତକ ରଚନା କରୁଥାନ୍ତୁ ନା କାହିଁକି ଏ କଥା ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ ଏଇମାନେ ହିଁ ଥିଲେ ଆଧୁନିକ ଗଦ୍ୟ ଓ ସାହିତ୍ୟ ବିକାଶର ଅଗ୍ରଦୂତ । ପାଶ୍ଚାତ୍ୟଜ୍ଞାନବିଜ୍ଞାନ ପାଠ୍ୟପୁସ୍ତକ ମଧ୍ୟରେ ଲିପିବଦ୍ଧକରି ପାରମ୍ପାରିକ ନ୍ୟାୟରେ ଗଢ଼ି ଉଠିଥିବା ରୁଚିବୋଧ ଭିତରେ ଏଇ ମିସନାରୀମାନେ ପ୍ରଥମେ ପରିବର୍ତ୍ତନ ଆଣିବାର ସୂତ୍ରପାତ କରିଥିଲେ । ବିଦ୍ୟାଳୟ ତଥା ଛାତ୍ରସଂଖ୍ୟାର ସ୍ୱଳ୍ପତା ଦୃଷ୍ଟିରୁ ଏ ପରିବର୍ତ୍ତନ ୧୮୪୧ ସାଲ ପୂର୍ବରୁ ବିଶେଷ ଦେଖା ଦେଇ ନଥିଲା । କିନ୍ତୁ ଯେଉଁ ରୁଚି ପରିବର୍ତ୍ତନ ଆଧୁନିକ ସାହିତ୍ୟ ସୃଷ୍ଟିର ଏକ ପ୍ରଧାନ କାରଣ ସେ ରୁଚିପରିବର୍ତ୍ତନର ଅସ୍ଥୂମାରମ୍ଭ ଏଇ ସମୟରେ ଯେ ହୋଇଥିଲା ତାହା ଅସ୍ୱୀକାର କରାଯାଇ ନପାରେ ।

ବିଦେଶୀ ଶାସକ ଓ ଶାସନ-କଳର ଉଚ୍ଚକର୍ମଚାରୀମାନେ ସେ ସମୟରେ ଓଡ଼ିଆ ଭାଷା ନ ଜାଣି ମଧ୍ୟ ଶାସନ କଳରେ ନିଯୁକ୍ତ ହେଉଥିଲେ । ଓଡ଼ିଶାର ସିଭିଲିୟାନ ଅଫିସରମାନେ ଫୋର୍ଟ ଉଇଲିୟମ କଲେଜରେ ଦେଶୀଭାଷା ଅର୍ଥାତ୍ ବଙ୍ଗଳା ଭାଷା ପଢ଼ି ଓଡ଼ିଶାର ଶାସନ କର୍ମରେ ଯୋଗ ଦେଉଥିଲେ । କାରଣ ଏଇ କଲେଜର ପାଠ୍ୟକ୍ରମରେ ଦେଶୀ ଭାଷା ଭିତରେ ଓଡ଼ିଆ ସ୍ଥାନ ପାଇ ନଥିଲା । କିନ୍ତୁ କର୍ମଚାରୀମାନଙ୍କୁ ସାହାଯ୍ୟ କରିବା ପାଇଁ କଲେଜର ସହକାରୀ ଲାଇବ୍ରେରିୟାନ ମୋହନପ୍ରସାଦ ଠାକୁର

ଗୋଟିଏ ଇଂରାଜୀ-ଓଡ଼ିଆ ଅଭିଧାନ (୧୮୧୧) ସଂକଳନ କରିଥିଲେ । ଓଡ଼ିଆ ଓ ବଙ୍ଗଳା ଭାଷା ଭିତରେ ବହୁ ସାମ୍ୟ ଥିବାରୁ ଶାସନ କାର୍ଯ୍ୟରେ ଓଡ଼ିଆ ଭାଷା ଅନଭିଜ୍ଞ ଏଇ ଅଫିସରମାନଙ୍କୁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁ ନଥିଲା । ଏମାନଙ୍କ ମଧ୍ୟରୁ ଯେଉଁମାନେ ଓଡ଼ିଆ ଜାଣିଥିଲେ ସେମାନେ ପ୍ରଥମେ ବଙ୍ଗଳାଭାଷା ପଢ଼ି ଓଡ଼ିଆ ଶିଖିବାକୁ ଚେଷ୍ଟା କରିଥିଲେ । ସଟନ ସାହେବଙ୍କର ଅବସ୍ଥା ସେଇଆ ଥିଲା । ଫଳରେ ସେ ଯେଉଁ ଓଡ଼ିଆ ପାଠ୍ୟ ପୁସ୍ତକ ରଚନା କରିଥିଲେ ସେଥିରେ ବଙ୍ଗଳା ଭାଷାର ପ୍ରଭାବ ପରିଦୃଷ୍ଟ ହେବା ଅସ୍ୱାଭାବିକ ନୁହେଁ । ପୁନଶ୍ଚ ତାଙ୍କ ପୁସ୍ତକଗୁଡ଼ିକ ଥିଲା ଯଥାର୍ଥତଃ ବଙ୍ଗଳା ପୁସ୍ତକର ଅନୁବାଦ ମାତ୍ର । କେରି ସାହେବଙ୍କ ଓଡ଼ିଆ ବାଇବେଲ ଓ ସଟନ ସାହେବଙ୍କ ପାଠ୍ୟ ପୁସ୍ତକ, ଏ ଉଭୟର ଭାଷା ତୁଳନା କଲେ ଶେଷୋକ୍ତ ପୁସ୍ତକରେ ବଙ୍ଗଳା ପ୍ରଭାବ କେତେକ ପରିମାଣରେ କମ୍ ଥିବାର ଦେଖିବାକୁ ମିଳେ ।

**ମିସନାରୀ ଯୁଗ ବା ରୁଚି ପରିବର୍ତ୍ତନର ଦ୍ୱିତୀୟ ପର୍ଯ୍ୟାୟ (୧୮୪୨-୭୦):**—ମିସନାରୀମାନେ କୋଡ଼ିଏ ବର୍ଷ (୧୮୨୨-୪୧) ଭିତରେ ଯେଉଁ ଶିକ୍ଷା ଓ ପାଠ୍ୟପୁସ୍ତକ ରଚନାର ମୂଳଭିତ୍ତି ପ୍ରତିଷ୍ଠା କଲେ ତାହା ପରବର୍ତ୍ତୀ ପ୍ରାୟ ତିରିଶ ବର୍ଷ (୧୮୪୨-୭୦) ଭିତରେ ସରକାରଙ୍କ ପ୍ରତ୍ୟକ୍ଷ ସାହାଯ୍ୟ ଓ ସହାନୁଭୂତି ହେତୁ ଅଧିକ ଦୃଢ଼ତର ହୋଇ ଉଠିଥିଲା । ୧୮୨୩ ସାଲ ଅକ୍ଟୋବର ମାସରେ ପ୍ରତିଷ୍ଠିତ କଟକ ଇଂରାଜୀ ଫ୍ରିଟି ସ୍କୁଲ ଅର୍ଥାଭାବ ହେତୁ ମିସନାରୀମାନେ ପରିଚାଳନା କରି ପାରିଲେ ନାହିଁ । ତେଣୁ କମ୍ପାନୀ ସରକାର ୧୮୪୧ ସାଲ ଫେବ୍ରୁୟାରୀ ମାସରୁ ଏହାର ସମସ୍ତ ପରିଚାଳନା ଭାର ନିଜ ହସ୍ତକୁ ନେଇଥିଲେ ।

ସେଇ ସମୟଠାରୁ ଏଇ ବିଦ୍ୟାଳୟଟି ସମଗ୍ର ଓଡ଼ିଶାର ପ୍ରଧାନ ଶିକ୍ଷାକେନ୍ଦ୍ର ରୂପେ ବିବେଚିତ ହେଲା । ପ୍ରଥମେ ହାଇସ୍କୁଲ, ପରେ ଏଫ. ଏ. ଶ୍ରେଣୀ (୧୮୬-) ଖୋଲା ଯାଇଥିଲା । ବି. ଏ. ଶ୍ରେଣୀ (୧୮୭୬) ଅର୍ଥାତ୍ କଲେଜରେ ପରିଣତ ହେବାରୁ ସ୍କୁଲଟି କଲେଜଠାରୁ ପୃଥକ୍ ହୋଇପଡ଼ିଲା । ସମୟ କ୍ରମେ ବାଲେଶ୍ୱର ଓ ପୁରୀରେ ହାଇସ୍କୁଲ (୧୮୫୩ ସାଲ ନଭେମ୍ବର ତା ୧ ରିଖ, ଏ ଉଭୟ) ମଧ୍ୟ ଖୋଲାଯାଇଥିଲା । ଲର୍ଡ଼ ହାର୍ଡ଼ିଞ୍ଜଙ୍କ ଆଦେଶ ମତେ ସମଗ୍ର ବଙ୍ଗ ପ୍ରଦେଶରେ ଯେଉଁ ୧୦୧ ଟି ଦେଶୀଭାଷା ସ୍କୁଲ ଖୋଲା ଯିବାର ପ୍ରସ୍ତାବ ହୋଇଥିଲା ସେଥିରୁ ଓଡ଼ିଶା ଭାଗରେ ପଡ଼ିଥିଲା କେବଳ ୮ଟି । ଫଳରେ ପୁରୀ ଜିଲାର ଖୋର୍ଦ୍ଧା (ତା୨୦।୪।୧୮୪୫) ଓ ପୁରୀ (ପ୍ରତିଷ୍ଠାର ସମୟ ଜଣାନାହିଁ); ବାଲେଶ୍ୱର ଜିଲାର ବାଲେଶ୍ୱର (୧୮୪୫ ଅକ୍ଟୋବର), ରେମୁଣା (୧୮୪୫ ନଭେମ୍ବର), ଓ ଭଦ୍ରଖ (୧୮୪୫ ନଭେମ୍ବର); କଟକ ଜିଲାର କେନ୍ଦ୍ରାପଡ଼ା (ତା୨୪।୧୦।୧୮୪୫), ମାହାଙ୍ଗା (ତା୨୭।୧୦।୧୮୪୫) ଓ ହରିହର-ପୁର (ତା ୧୭।୧୧।୧୮୪୫), ଏଇ ଆଠୋଟି ସ୍ଥାନରେ ଭାଷା ବିଦ୍ୟାଳୟ ସରକାର ପ୍ରତିଷ୍ଠା କରିଥିଲେ । ୧୮୪୭ ସାଲରେ ଅନୁଗୁଳ ସରକାରଙ୍କ ଅଧୀନକୁ ଆସିବାରୁ ସେଠାରେ ମଧ୍ୟ ୬ଟି ସ୍କୁଲ ଖୋଲା ଯାଇଥିଲା । ଯଥା:—ପୁରୁଣା ଗଡ଼ସ୍କୁଲ (ତା ୧୬।୪।୧୮୫୦), ପୋକଭୁଙ୍ଗା ସ୍କୁଲ ( ତା ୧୨।୨।୧୮୫୩ ), କାଙ୍ଗୁଲା ସ୍କୁଲ ( ତା ୧୨।୨।୧୮୫ ) । ଚଳମୂଳ ସ୍କୁଲ ( ତା ୧।୪।୧୮୫୫ ), ବଳରାମପ୍ରସାଦ ସ୍କୁଲ (୧୨।୫।୧୮୫୭) ଓ ଯୋଡ଼ା ସ୍କୁଲ (ତା ୧୫।୫।୧୮୫୭) । କ୍ଷେତ୍ରଧରେ ମଧ୍ୟ ନିମ୍ନଲିଖିତ ସ୍କୁଲମାନ ଖୋଲାଯାଇଥିଲ । ଯଥା:—ଟାଙ୍ଗୀ ସ୍କୁଲ (ତା ୧୬।୬।୧୮୫ ), ବାଣପୁର ସ୍କୁଲ ( ତା ୧।୬।୧୮୫୮ ), ବେଗୁନିଆ ସ୍କୁଲ

(ତା ୨। ।୧୮୫. ), ଭୁବନେଶ୍ୱର ସ୍କୁଲ (ତା ୨୬।୭।୧୮୫୯ ) ଓ ମୁଣ୍ଡମୁହାଣ ସ୍କୁଲ ( ତା ୧।୭।୧୮୫୯ ) । ୧୮୬୦ ସାଲ ବେଳକୁ ମିସନାରୀ ଓ ସାହାଯ୍ୟପ୍ରାପ୍ତ ସ୍କୁଲ ବ୍ୟତୀତ ସରକାରଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ଥିଲା ୧୯ ଟି ସ୍କୁଲ । ୧୮୬୦ ସାଲ ବେଳକୁ ସରକାରୀ, ବେସରକାରୀ ଓ ମିସନାରୀ ସବୁ ଶ୍ରେଣୀର ସ୍କୁଲ ସଂଖ୍ୟା ଥିଲା ୯୬ ଟି । ଏଥିରୁ ୧୪ ଟି ଇଂରାଜୀ ସ୍କୁଲ ଓ ବାକୀ ୮୨ ଟି ଭର୍ଣ୍ଣାକୁଲାର ସ୍କୁଲ ।

୧୮୪୨ ସାଲ ପରେ ଦେଶରେ ଅଧିକ ସଂଖ୍ୟାରେ ସ୍କୁଲ ପ୍ରତିଷ୍ଠା ହେବାରୁ ପାଠ୍ୟପୁସ୍ତକ ରଚନାର ଆବଶ୍ୟକତା ଅନୁଭୂତ ହୋଇଥିଲା । ପୁନଶ୍ଚ ଅନ୍ୟ ଏକ ଐତିହାସିକ ପରିସ୍ଥିତି ହେତୁ ଏ ଆବଶ୍ୟକତାର ଗୁରୁତ୍ୱ ଆହୁରି ବଢ଼ି ଯାଇଥିଲା । ୧୮୪୨ ସାଲରେ ସମଗ୍ର ଉତ୍ତର ଭାରତର ବିଦ୍ୟାଳୟମାନଙ୍କରେ ଉପଯୁକ୍ତ ପାଠ୍ୟ-ପୁସ୍ତକ ପ୍ରଣୟନ ଓ ପ୍ରବର୍ତ୍ତନ ପାଇଁ ଏକ ବିଧିବଦ୍ଧ ଯୋଜନା କମ୍ପାନୀ ସରକାର ପ୍ରସ୍ତୁତ କରିଥିଲେ । ବିଭିନ୍ନ ସ୍ଥଳରେ ପ୍ରଚଳିତ ହେଉଥିବା ପାଠ୍ୟପୁସ୍ତକ, ସେମାନଙ୍କ ବର୍ତ୍ତମାନ ଅବସ୍ଥା ଓ ଉନ୍ନତି ପାଇଁ ପ୍ରସ୍ତାବମାନ ପଠାଇବା ନିମନ୍ତେ ଶିକ୍ଷା କାଉନସିଲର ସେକ୍ରେଟାରୀ ଏଚ୍. ଭି. ବେଲି ସାହେବ ବିଭିନ୍ନ ସ୍ଥଳର ଶିକ୍ଷା କମିଟିମାନଙ୍କୁ ଅନୁରୋଧ କରିଥିଲେ । କଟକର ଶିକ୍ଷାକମିଟି ମଧ୍ୟ ପ୍ରଚଳିତ ସମସ୍ତ ପୁସ୍ତକର ବିବରଣୀ ସହିତ ଅନ୍ୟ ନୂତନ ପୁସ୍ତକ ପ୍ରଣୟନର ପ୍ରସ୍ତାବ ଦେଇଥିଲେ ଓ ବଙ୍ଗଳାରୁ ଓଡ଼ିଆରେ ପାଠ୍ୟ ପୁସ୍ତକ ଅନୁବାଦ କରିବା ଦିଗରେ ମିଷ୍ଟର ସଟନ ଓ କଟକ ସ୍କୁଲର ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣ ଉପଯୁକ୍ତ ବ୍ୟକ୍ତି ବୋଲି ଅନୁମୋଦନ କରିଥିଲେ । ଏହି ସମୟଠାରୁ ଯେଉଁ ପାଠ୍ୟପୁସ୍ତକ

ରଚିତ ହେଲା ସେ ସବୁ ବିଭିନ୍ନ ସ୍ତରର ଛାତ୍ରମାନଙ୍କ ମାନସିକ ବିକାଶ ଦିଗକୁ କେତେକ ପରିମାଣରେ ଲକ୍ଷ୍ୟ ରଖି ରଚିତ ହୋଇଥିଲା । ସଟନ, ବିଶ୍ୱମ୍ଭର ବିଦ୍ୟାଳଙ୍କାର, ମିଷ୍ଟର ସି: ଲେସି, ଫିଲିପ୍ସ ପ୍ରଭୃତି ଲେଖକମାନେ ଆଲୋଚ୍ୟ ସମୟ ମଧ୍ୟରେ ନିମ୍ନଲିଖିତ ପାଠ୍ୟପୁସ୍ତକ ରଚନା କରିଥିଲେ, ଯଥା:—(କ) ସଟନଙ୍କର—(୧) ଇଂରାଜୀ ଓଡ଼ିଆରେ ପ୍ରଥମ ଶିକ୍ଷା (୧୮୪୪); (୨) ଓଡ଼ିଆ ପ୍ରାଇମର (ଦ୍ୱିତୀୟ ସଂସ୍କରଣ ୧୮୪୫), (୩) ଭର୍ଣ୍ଣାକୁଲାର କ୍ଲାସ ବୁକ୍ ରିଡ଼ର (୧୮୪୭); (୪) ଓଡ଼ିଆ ଇନଷ୍ଟ୍ରକ୍‌ଟର (୧୮୪୭); (୫) ଓଡ଼ିଶା ଇତିହାସ (୧୮୪୭) ଓ (୬) ଓଡ଼ିଆରେ ହିତୋପଦେଶ (୧୮୫୨) (ଖ) ବିଶ୍ୱମ୍ଭରଙ୍କର ଓଡ଼ିଆ ଗଣିତ (୧୮୪୭); (ଗ) ଲେସି ସାହେବଙ୍କର:—(୧) ଓଡ଼ିଆ ବ୍ୟାକରଣ (୧୮୫୫); (୨) ନୀତି କଥା (୧୮୫୫); ଓ (୩) ହିତୋପଦେଶ (୧୮୫୫) । (ଘ) ଜେ. ଫିଲିପ୍‌ସଙ୍କର ଓଡ଼ିଆ ଭୂଗୋଳ (୧୮୪୫) ।

ପ୍ରାୟ ଅର୍ଦ୍ଧଶତାବ୍ଦୀ (୧୮୨୨-୭୦) ଧରି ଏ ଦେଶରେ ଯେଉଁ ନୂତନ ଶିକ୍ଷା ପ୍ରଚଳିତ ହେଲା ତାହା ସନ୍ତୋଷଜନକ ଭାବେ ଅଗ୍ରଗତି କରିଥିଲା ବୋଲି ମନେହୁଏ ନାହିଁ । ଏ ଦିଗରେ ଯେଉଁ କେତୋଟି ପ୍ରତିବନ୍ଧକ ଦେଖାଦେଇଥିଲା ତାହା ନିମ୍ନରେ ପ୍ରଦତ୍ତ ହେଲା :—

(କ) ଓଡ଼ିଶା ବିଶାଳ ବଙ୍ଗ ପ୍ରଦେଶର ଏକ ଉପାନ୍ତ ବିଭାଗ ରୂପେ ଗୃହୀତ ହେବାରୁ ଓ ଶାସକମାନଙ୍କର ଦୃଷ୍ଟି ସର୍ବଦା ଆଜର ବଙ୍ଗ ଦେଶଠାରେ ନିବଦ୍ଧ ରହିବାରୁ ଓଡ଼ିଶା ବାଧ୍ୟହୋଇ ଉପେକ୍ଷିତ ହୋଇଥିଲା । ବଙ୍ଗଳା ସହିତ ଓଡ଼ିଶାର ଏଇ ରାଜନୈତିକ ବନ୍ଧନ ତାର ଆଧୁନିକ ସାହିତ୍ୟ ବିକାଶ ଦିଗରେ ଯେତେ ସାହାଯ୍ୟ କରିଛି ସେତେ ମଧ୍ୟ ଅନ୍ତରାୟ ସୃଷ୍ଟି କରିଛି ।

(ଖ) ଶିକ୍ଷା ପ୍ରସାର ଦିଗରେ ଓଡ଼ିଶା ପ୍ରତି ବଙ୍ଗ ସରକାରଙ୍କର ଅନୁଦାର ମନୋଭାବ :—ସମଗ୍ର ବଙ୍ଗ ପ୍ରେସିଡେନ୍‌ସି ପାଇଁ ଶିକ୍ଷା ଦିଗରେ ଉଦ୍ଦିଷ୍ଟ ଅର୍ଥରୁ ଅଧିକ ଭାଗ ଆଧୁନିକ ବଙ୍ଗପ୍ରଦେଶ ପାଇଁ ସେତେବେଳେ ଖର୍ଚ୍ଚ କରାଯାଉଥିଲା । ଓଡ଼ିଶାର ଜନସଂଖ୍ୟା ତୁଳନାରେ ବ୍ୟୟିତ ଅର୍ଥ ବଙ୍ଗଳାର ଯେ କୌଣସି ସାଧାରଣ ଜିଲ୍ଲାର ଅର୍ଥ ବ୍ୟୟଠାରୁ କମ୍ ଥିଲା । ଶିକ୍ଷା ସମ୍ପର୍କୀୟ ଏଇ ଅହେତୁକ, ଅବାଞ୍ଛନୀୟ ନୀତି ଓଡ଼ିଶାର ବିପୁଳ ଅନିଷ୍ଟ କରିଥିବାର ସମସାମୟିକ ବିଭାଗୀୟ ଇନସ୍‌ପେକ୍ଟରମାନଙ୍କ ମନ୍ତବ୍ୟରେ ସ୍ପଷ୍ଟ ଲିଖିତ ହୋଇ ରହିଛି ।

(ଗ) ଆଧୁନିକ ଶିକ୍ଷାପ୍ରତି ଏ ଦେଶ ଲୋକଙ୍କ ଗଭୀର ବିତୃଷ୍ଣା ମନୋଭାବ: – ମିସନାରୀମାନେ ପ୍ରଥମେ ଏ ଦେଶରେ ଛାପା ପୁସ୍ତକରେ ଶିକ୍ଷା ଦେଉଥିବାରୁ ଓ ଏମାନେ ଏ ଦେଶ ଲୋକଙ୍କ ଧର୍ମ ବିଶ୍ୱାସ ଉପରେ କଠୋର ସମାଲୋଚନା କରୁଥିବାରୁ ଲୋକେ ଧର୍ମହାନି ହେବା ଭୟରେ ସ୍କୁଲକୁ ( ମିସନାରୀ ଓ ସରକାରୀ ) ନିଜ ନିଜ ସନ୍ତାନମାନଙ୍କୁ ପଠାଉ ନଥିଲେ । ଏପରିକି ଛାପା ପୁସ୍ତକ ପଢ଼ିଲେ ଜାତିଯିବ, ସ୍କୁଲରେ ପଢ଼ିଲେ ଖ୍ରୀଷ୍ଟିୟାନ ହେବାକୁ ପଡ଼ିବ, ସ୍କୁଲକୁ ପିଲା ପଠାଇଲେ ପିଲାଙ୍କୁ ସାହେବ ବିଲାତ ପଠାଇ ଦେବ, ଇନସପେକ୍ଟରମାନେ ହେଉଛନ୍ତି ଛଦ୍ମବେଶୀ ପାଦ୍ରୀ ଓ ଏ ଶିକ୍ଷା ହେଉଛି ତାର ଗୋଟାଏ ବାହାର ଯୋଡ଼ଣୀ (ଉଦ୍ଦେଶ୍ୟ ସିଦ୍ଧ ହେଲାପରେ ଯାହାକୁ ସହଜରେ ଫୋପାଡ଼ି ଦେଇହେବ), ଶିକ୍ଷାପ୍ରତି ଏପରି ବିଭିନ୍ନ ଭ୍ରାନ୍ତ ଧାରଣା ଲୋକ-ଚିତ୍ତରେ ସେତେବେଳେ ବଦ୍ଧମୂଳ ହୋଇ ରହିଥିଲା । ଏ କୁସଂସ୍କାର ମନୋଭାବ ଶିକ୍ଷା ପ୍ରସାର ଦିଗରେ ବହୁ ପ୍ରତିବନ୍ଧକ ସୃଷ୍ଟି କରିଥିଲା ।

ସମସ୍ତ ସବୁଦିନ ସମାନ ଯାଏନା । ଶିକ୍ଷାପ୍ରତି ଲୋକଙ୍କର ଏପରି ବିତୃଷ୍ଣା ମନୋଭାବ ସମୟକ୍ରମେ ତିରୋହିତ ହୋଇ ଯାଇଥିଲା । ଲୋକଙ୍କ ମନର ଏ ଶୁଭ ପରିବର୍ତ୍ତନ ୧୮୬୦ ସାଲ ପରେ ପରିଲକ୍ଷିତ ହୁଏ । ଏ ପରିବର୍ତ୍ତନ ମୂଳରେ ଥିଲା ଶିକ୍ଷା ପ୍ରସୂତ ସରକାରୀ କର୍ମଲାଭର ପ୍ରବଳ ଆକର୍ଷଣ । ୧୮୩୩ ସାଲରେ ଲର୍ଡ଼ ମେକଲେଙ୍କ ଶିକ୍ଷା ସମ୍ବନ୍ଧୀୟ ନିୟମାବଳୀରେ ଶିକ୍ଷାନୁଷ୍ଠାନ ମାନଙ୍କରେ ଶିକ୍ଷାର ମାଧ୍ୟମ ଓ ବିଷୟବସ୍ତୁ ସମ୍ପର୍କରେ ଇଂରାଜୀ ଭାଷାକୁ ପ୍ରାଧାନ୍ୟ ଦିଆଯାଇଥିଲା । ୧୮୫୪ ସାଲରେ ଲର୍ଡ ହାର୍ଡିଞ୍ଜଙ୍କ ଆଦେଶମତେ ଆଧୁନିକ ଶିକ୍ଷା ସରକାରୀ ଚାକିରୀ ଲାଭର ପ୍ରଥମ ଓ ପ୍ରଧାନ ଅବଲମ୍ବନ ରୂପେ ଗୃହୀତ ହୋଇଥିଲା । ଜୀବିକାର୍ଜ୍ଜନ ସହିତ ଚାକିରୀର ଓ ଚାକିରୀ ସହିତ ଆଧୁନିକ ଶିକ୍ଷାର ସ୍ଥୂଳତଃ, ଜୀବିକାର୍ଜ୍ଜନ ସହିତ ଆଧୁନିକ ଶିକ୍ଷାର ସମ୍ପର୍କ ଘନିଷ୍ଠ ହୋଇ ଉଠିଲା । ଆଧୁନିକ ଶିକ୍ଷା ଇଂରାଜୀ ଭାଷା ମାଧ୍ୟମରେ ବିତରିତ ହେଉଥିବାରୁ ଲୋକେ ଇଂରାଜୀ ଶିକ୍ଷା ପ୍ରତି ଅଧିକ ଅଧିକ ଆକୃଷ୍ଟ ହୋଇପଡ଼ିଲେ । ଅତ୍ୟନ୍ତ ପରିତାପର ବିଷୟ ଯେ ଯେଉଁ ସମୟରେ ଓଡ଼ିଶାର ଲୋକେ ବିଦ୍ୟାର୍ଜ୍ଜନ ପାଇଁ ଅଧିକ ଆଗ୍ରହ ପ୍ରକାଶ କରିବାକୁ ଆରମ୍ଭ କଲେ ଠିକ୍ ସେହି ସମୟରେ ସରକାର ଏ ଦେଶରେ ଅର୍ଥ ବ୍ୟୟ କରିବାପାଇଁ କୁଣ୍ଠିତ ହେବାକୁ ଲାଗିଲେ ।

ଯେଉଁ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀର ଅକ୍ଳାନ୍ତ ଅଧ୍ୟବସାୟ ହେତୁ ଆଧୁନିକ ଓଡ଼ିଆ ସାହିତ୍ୟ ପରବର୍ତ୍ତୀ ସମୟରେ ସ୍ଫୂର୍ତ୍ତିଲାଭ କରିଥିଲା ସେ ଶ୍ରେଣୀ ୧୮୪୦ ସାଲ ପୂର୍ବରୁ ଓଡ଼ିଶାରେ ନ ଥିଲା । ଏ ଶ୍ରେଣୀର ଯଥାର୍ଥ ଅଭ୍ୟୁଦୟ ଘଟିଛି ୧୮୪୦ ସାଲ ପରେ । ୧୮୪୧-୭୦ ସାଲ ଅର୍ଥାତ୍ ୩୦ ବର୍ଷ ଭିତରେ ଏ ଶ୍ରେଣୀ କ୍ରମଶଃ ବିକାଶ ଲାଭ

କରିଥିଲା । ୧୮୬୮-୭୦ ସାଲରେ ଓଡ଼ିଶାରେ ଓଡ଼ିଆ ଭାଷାକୁ ଲୋପକରି କଚେରୀ ଓ ବିଦ୍ୟାଳୟମାନଙ୍କରେ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ପ୍ରବର୍ତ୍ତନ କରିବାକୁ ଯେଉଁ ହୀନ ଷଡ଼ଯନ୍ତ୍ର ହୋଇଥିଲା ତାହା ଏଇ ନୂତନ ଅଭ୍ୟୁତ୍ଥିତ ଶିକ୍ଷିତ ଶ୍ରେଣୀ ଓ ରାଜପୁରୁଷମାନଙ୍କ ଅପୂର୍ବ କଲ୍ୟାଣରୁ ପ୍ରତିହତ ହୋଇଯାଇଥିଲା । ୧୮୬୫-୬୬ ସାଲର ନଅଙ୍କ ଦୁର୍ଭିକ୍ଷ ଏ ଜାତିର ମେରୁଦଣ୍ଡ ଭାଙ୍ଗିଦେବା ସାଥିକୁ ଭାଷା ବିଲୋପ ଆନ୍ଦୋଳନ ଓଡ଼ିଆ ପ୍ରାଣରେ ଏକ ପ୍ରଚଣ୍ଡ ଆଘାତ ଦେଇଥିଲା । ଏଇ ଆଘାତର ପରିଣତି ସ୍ୱରୂପ ଆଧୁନିକ ସାହିତ୍ୟ ୧୮୭୦ ସାଲ ପରେ ବିକାଶ ଲାଭ କରିବାକୁ ଅନୁକୂଳ ବାତାବରଣ ଲାଭ କରିଥିଲା ।

**ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ପ୍ରାକ୍‌କାଳ (୧୮୭୧-୮୦):**—ସାମାନ୍ୟ ଦଶଟି ବର୍ଷ (୧୮୭୧-୮୦) ମଧ୍ୟରେ ଯଥାର୍ଥ ସାହିତ୍ୟ ସୃଷ୍ଟିପାଇଁ ଲେଖକମାନଙ୍କ ଅନ୍ତରରେ ଯେଉଁ ଅଭିନବ ଉତ୍ସାହ ଓ ଅନନୁଭୂତ ଉନ୍ମାଦନା ଖେଳିଯାଇଥିଲା ତାହା ବାସ୍ତବିକ ବିସ୍ମୟକର ଓ ଚମକପ୍ରଦ । ଯେତେଦୂର ମନେ-ହୁଏ, ନଅଙ୍କ ଦୁର୍ଭିକ୍ଷ ଓ ଭାଷା ବିଲୋପ ଆନ୍ଦୋଳନ ହୋଇ ନଥିଲେ ଓଡ଼ିଆଭାଷାର ସଂରକ୍ଷଣ ଓ ସାହିତ୍ୟର ସଂବର୍ଦ୍ଧନ ପାଇଁ ଓଡ଼ିଆମାନେ କିମ୍ବା ରାଜପୁରୁଷମାନେ କେହି କେବେ ଏପରି ଆତ୍ମ-ସଚେତନ ହୋଇ ଉଠି ନଥାନ୍ତେ । ତେଣୁ ଏ ଦୁର୍ଭିକ୍ଷ ଓ ଭାଷା ଆନ୍ଦୋଳନ ଯଥାର୍ଥରେ ଛଦ୍ମବେଶରେ ଓଡ଼ିଶାର ଅଶେଷ କଲ୍ୟାଣ ସାଧନ କରିଥିଲେ । ବଙ୍ଗଳା ଅପେକ୍ଷା ଓଡ଼ିଶାରେ ଆଧୁନିକ ସାହିତ୍ୟ ପ୍ରାୟ ୫୦ ବର୍ଷ ପରେ ବିକାଶ ଲାଭ କରିବାର ପ୍ରଧାନତଃ ଦୁଇଟି କାରଣ ଲକ୍ଷ୍ୟ କରିଯାଇପାରେ । ସ୍ୱାଧୀନତା ଲୋପ ପରେ ଦେଶର ସର୍ବାଙ୍ଗୀନ ଉନ୍ନତି

କରିବାର ଦାୟିତ୍ୱ ବଙ୍ଗଦେଶ ପରି ଅନ୍ୟାନ୍ୟ ପ୍ରଦେଶରେ ରାଜା ମହାରାଜାମାନଙ୍କଠାରୁ ଆସି ଜନସାଧାରଣଙ୍କ ଉପରେ ନ୍ୟସ୍ତ ହୋଇଥିଲା । ବଙ୍ଗଦେଶରେ ଚିରସ୍ଥାୟୀ ବନ୍ଦୋବସ୍ତ ହେତୁ ଏକ ଧନିକ ଜମିଦାର ଶ୍ରେଣୀ ସୃଷ୍ଟି ହୋଇ ପାରିଥିଲା । ଏହି ଜମିଦାର ଶ୍ରେଣୀ ଆଧୁନିକ ଶିକ୍ଷାରେ ଅନୁପ୍ରାଣିତ ହୋଇ ଦେଶର ବହୁବିଧ ମଙ୍ଗଳସାଧନ ପାଇଁ ଚେଷ୍ଟିତ ହୋଇଥିଲା । ଦ୍ୱିତୀୟତଃ ଦେଶରେ ଶିକ୍ଷାର ବହୁଳ ପ୍ରଚାରହେତୁ ଏକ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀ ଶୀଘ୍ର ଆବିର୍ଭାବ ଲାଭ କରିଥିଲା । ବଙ୍ଗଳାରେ ନୂତନ ଅଭ୍ୟୁତ୍ଥିତ ଏକ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀ ଧନୀ ଜମିଦାରମାନଙ୍କ ଅକୁଣ୍ଠ ସାହାଯ୍ୟ ଓ ସରକାରଙ୍କ ପ୍ରତ୍ୟକ୍ଷ ଅର୍ଥ ଓ ଉତ୍ସାହ ଲାଭକରି ପ୍ରାୟ ୧୮୨୦ ସାଲରୁ ଗୋଟାଏ ସ୍ୱତନ୍ତ୍ର ବଙ୍ଗଳା ସାହିତ୍ୟ ସୃଷ୍ଟି କରିବାରେ ଅଭିନିବିଷ୍ଟ ଚିତ୍ତ ହୋଇ ପଡ଼ିଲା । ଏ ଅବସ୍ଥା କିନ୍ତୁ ଓଡ଼ିଶାରେ ଥିଲା ସମ୍ପୂର୍ଣ୍ଣ ସ୍ୱପ୍ନ । ଓଡ଼ିଶାରେ ଏହି ମଧ୍ୟବିତ୍ତଶ୍ରେଣୀ ୧୮୭୦ ସାଲ ପରେ ଯଥାର୍ଥ ବିକାଶ ଲାଭ କରିବା କଥା ପୂର୍ବରୁ କୁହାଯାଇଛି । ନୂତନ ଜମିଜମା ବନ୍ଦୋବସ୍ତ ସମ୍ପର୍କରେ ବିପୁଳ ଅବ୍ୟବସ୍ଥା ଓ କଲିକତାରେ (୧୮୧୮ ସାଲ ପର୍ଯ୍ୟନ୍ତ) ଓଡ଼ିଶା ଜମିଦାରି ନିଲାମ ହେବାର ଅବାଞ୍ଛନୀୟ ପରିସ୍ଥିତି ହେତୁ ଓଡ଼ିଶାର ବୁଢ଼ ଗୁଡ଼ାପ୍ରାଂଶ ଖାନଦାନ ଜମିଦାର ବଂଶ ନିଃସ୍ୱ ହୋଇ ପଡ଼ିଥିଲେ । ଫଳରେ ଏହି ଜମିଦାରି ସବୁ ଅଣଓଡ଼ିଆଙ୍କ ହସ୍ତକୁ ଚାଲିଯାଇଥିଲା । ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀର ଦାରିଦ୍ର୍ୟ ଓ ଅଣଓଡ଼ିଆ ଜମିଦାର ଶ୍ରେଣୀର ଓଡ଼ିଆଭାଷା ପ୍ରତି ଉଦାସୀନ ମନୋଭାବ, ଏ ଉଭୟହିଁ ସାହିତ୍ୟ ବିକାଶର ପରିପନ୍ଥୀ ଥିଲା । ଦେଶର ଗଡ଼ଜାତମହାଲର ଦେଶୀୟ ରାଜାମାନେ ମଧ୍ୟ ଆଧୁନିକ ଶିକ୍ଷାପ୍ରତି ଆକୃଷ୍ଟ ହୋଇ ନ ଥିବାରୁ ଶିକ୍ଷାପ୍ରସାର ଓ ସାହିତ୍ୟ ଅଭିବୃଦ୍ଧି ଦିଗରେ ୧୮୯୦

ସାଲ ପର୍ଯ୍ୟନ୍ତ କିଛି କରି ନଥିଲେ । ତେଣୁ ସ୍ଥୂଳରେ କୁହାଯାଇ ପାରେ ଯେ ୧୮୬୦ ସାଲ ପର୍ଯ୍ୟନ୍ତ ଦେଶରେ ସାହିତ୍ୟର ଉନ୍ନତି ପାଇଁ କୌଣସି ଅନୁକୂଳ ବାତାବରଣ ସୃଷ୍ଟି ହୋଇ ନଥିଲା ।

ଓଡ଼ିଶାର ବିଦ୍ୟାଳୟମାନଙ୍କରେ ଓଡ଼ିଆଭାଷା ପ୍ରଚଳନ ହେବାର ରାଜକୀୟ ଆଦେଶ ୧୮୬୯ ସାଲ ନଭେମ୍ବର ମାସରେ ପ୍ରଚାରିତ ହୋଇଥିଲା । ସେଇଦିନଠାରୁ ରାଜପୁରୁଷମାନେ ବିଶେଷତଃ କମିଶନର ରେଭେନ୍‌ସା ସାହେବ ଓ ବିଭାଗୀୟ ସ୍କୁଲ ଇନ୍‌ସପେକ୍ଟର ଆର୍. ଏଲ୍. ମାର୍ଟିନ ଶିକ୍ଷାପ୍ରସାର ଦିଗରେ ଆପ୍ରାଣ ଚେଷ୍ଟା କରିବାରୁ ଏ ଦେଶରେ ବିଦ୍ୟାଳୟମାନଙ୍କ ପାଇଁ ବହୁବିଧ ପାଠ୍ୟପୁସ୍ତକ ପ୍ରଣୀତ ହେବାକୁ ଲାଗିଲା । ପୂର୍ବରୁ ଏ କ୍ଷେତ୍ରରେ ସାଧାରଣତଃ ମିଶନାରୀମାନେ ଅଗ୍ରଣୀ ଥିଲେ । କିନ୍ତୁ ୧୮୭୦ ସାଲ ପରଠାରୁ ଏ ଦେଶରେ ବାସକରୁଥିବା ବଙ୍ଗାଳୀ, ମରହଟ୍ଟି ଓ ଖାଣ୍ଟି ଓଡ଼ିଆମାନେ ବହୁ ସଂଖ୍ୟାରେ ପାଠ୍ୟପୁସ୍ତକ ରଚନା କରିବାକୁ ଲାଗିଲେ । ଆଲୋଚ୍ୟ ସମୟ (୧୮୭୧-୮୦)କୁ ଏକ ଅର୍ଥରେ ପାଠ୍ୟପୁସ୍ତକ ଯୁଗ ବା ରୁଚିପରିବର୍ତ୍ତନର ଭୂମିକା ପର୍ଯ୍ୟାୟ ରୂପେ ଗ୍ରହଣ କରାଯାଇପାରେ । ଇଂରାଜୀଭାଷା ମାଧ୍ୟମରେ ସାହିତ୍ୟ ତଥା ପାଶ୍ଚାତ୍ୟ ଜ୍ଞାନ-ବିଜ୍ଞାନ ଏ ଦେଶରେ ପ୍ରଚାର କରିବା ଆଧୁନିକ ଶିକ୍ଷା ପ୍ରଣାଳୀର ସର୍ବଶ୍ରେଷ୍ଠ ଲକ୍ଷ୍ୟ ଥିବାରୁ ଦେଶୀୟଭାଷାର ପାଠ୍ୟ-ପୁସ୍ତକମାନ ଏଇ ଆଦର୍ଶରେ ରଚିତ ହେଉଥିଲା । ଅର୍ଥାତ୍ ପାଶ୍ଚାତ୍ୟଜ୍ଞାନ ବିଜ୍ଞାନ ଏ ଦେଶ ଭାଷାମାଧ୍ୟମରେ ଲୋକଙ୍କୁ ପରିବେଷଣ କରାଯାଉଥିଲା । ପୂର୍ବରୁ ବିଦ୍ୟାଳୟମାନଙ୍କରେ ସାଧାରଣ ଅକ୍ଷର-ଜ୍ଞାନ ପରେ ସହଜ ଚଉତିଶା, ଓ ପରେ ସହଜ କାବ୍ୟ ଉପରେ ପ୍ରାଧାନ୍ୟ ଦିଆଯାଉଥିଲା । ଫଳରେ ଧର୍ମମୂଳକ ପାଠ୍ୟପୁସ୍ତକରେ

ଶିକ୍ଷିତ ଲୋକଙ୍କ ଚିତ୍ତବୃତ୍ତି ଯାହା ଥିଲା, ଆଧୁନିକ ଶିକ୍ଷାର ପ୍ରବର୍ତ୍ତନ ପରେ, ସେଥିରେ ଏକ ବିରାଟ ପରିବର୍ତ୍ତନ ପରିଲକ୍ଷିତ ହେଲା । ଜୀବନ ଉପଭୋଗ ବିଷୟରେ ନୂତନ ଦୃଷ୍ଟିଭଙ୍ଗୀ, ସାହିତ୍ୟର ରସାସ୍ୱାଦନ ପାଇଁ ସ୍ୱତନ୍ତ୍ର ମନୋବୃତ୍ତି, ପାଶ୍ଚାତ୍ୟଜ୍ଞାନ ବିଜ୍ଞାନ ଲାଭ ହେତୁ ପାର୍ଥିବ ଜଗତ ଉପରେ ନୂତନ ଅଭିଜ୍ଞତା ଅର୍ଜନ—ଏ ପ୍ରତ୍ୟେକଟି ସେଇପରିବର୍ତ୍ତିତ ଲୋକ ଚିତ୍ତରେ ଆଧୁନିକ ପାଠ୍ୟପୁସ୍ତକ ଅଧ୍ୟୟନ ହେତୁ ଦେଖାଦେଇଥିଲେ । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟା ଯେମିତି ପାଶ୍ଚାତ୍ୟ ଜ୍ଞାନବିଜ୍ଞାନରେ ସୁପରିଚିତ ହୋଇ ନୂତନ ସାହିତ୍ୟ ସୃଷ୍ଟି କଲି ସେଇପରି ତାକୁ ଅଭିବାଦନ ଜଣାଇବା ପାଇଁ ଏ ଦେଶରେ ମଧ୍ୟ ପାଠ୍ୟପୁସ୍ତକ ମାଧ୍ୟମରେ ଉପଯୁକ୍ତ ପରିସ୍ଥିତି ଓ ବାୟୁମଣ୍ଡଳ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିଲା । ଏଇ ବାୟୁମଣ୍ଡଳର ଅଗ୍ରମାରମ୍ଭ ହୁଏ ୧୮୨୨-୪୧ ସାଲରେ; ତାର ପରିବୃଦ୍ଧି ଘଟେ ୧୮୪୨-୭୦ ସାଲରେ ଏବଂ ତାହା ଏକ ସୁସ୍ଥିର ଭିତ୍ତି ଭୂମି ଉପରେ ପ୍ରତିଷ୍ଠିତ ହୁଏ ୧୮୭୧-୮୦ ସାଲରେ । ଏପରି ପରିସ୍ଥିତିର ଜନ୍ମ ପୂର୍ବରୁ ହୋଇ ନ ଥିଲେ ରାଧାନାଥ, ମଧୁସୂଦନଙ୍କ ପରି ଲେଖକମାନଙ୍କ ରଚନାବଳୀ ଏ ଦେଶରେ ସମୁଚିତ ଆଦର ପାଇପାରିଥାନ୍ତା ବୋଲି ବିଶ୍ୱାସ କରି ହୁଏ ନାହିଁ ।

ଆଲୋଚ୍ୟ ସମୟ (୧୮୭୧-୮୦) ମଧ୍ୟରେ ପାଠ୍ୟପୁସ୍ତକ ମାଧ୍ୟମରେ ସାହିତ୍ୟକ ରସାସ୍ୱାଦନପାଇଁ ଏକ ବଳିଷ୍ଠ ମୂଳଭିତ୍ତି ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଯଥାର୍ଥ ଆଧୁନିକ ସାହିତ୍ୟର ପ୍ରାଥମିକ ବିକାଶ ମଧ୍ୟ ଘଟିଥିଲା । ଆଧୁନିକ ସାହିତ୍ୟର ପ୍ରଥମ ବିକାଶଭୂମି ବଙ୍ଗପ୍ରଦେଶର ନିକଟରେ ବାଲେଶ୍ୱର ଥିବାରୁ ଏଇ ଜିଲାରେ ପ୍ରଥମେ ଏ ସାହିତ୍ୟ ଆତ୍ମ ପ୍ରକାଶ କରିବାକୁ ସୁବିଧା

ପାଇଥିଲା । ସୌଭାଗ୍ୟବଶତଃ ସେ ସମୟରେ ରାଧାନାଥ ଓ ମଧୁସୂଦନ ମଧ୍ୟ ଏହି ଜିଲ୍ଲାକୁ ନିଜର କର୍ମକ୍ଷେତ୍ରରୂପେ ଗ୍ରହଣ କରି ନେଇଥିଲେ । ତେଣୁ ବାଲେଶ୍ୱରର ଜମିଦାର କୁମାର ବୈକୁଣ୍ଠନାଥ ଦେଙ୍କ ଅକପଟ ଆନୁକୂଲ୍ୟ ଓ ରାଧାନାଥ-ମଧୁସୂଦନଙ୍କ ପରି ନୂତନ ଲେଖକମାନଙ୍କ ସହଯୋଗିତାରେ ଓଡ଼ିଶାର ପ୍ରଥମ ସାହିତ୍ୟ ମାସିକପତ୍ରିକା "ଉତ୍କଳଦର୍ପଣ" (୧୮୭୩ ସାଲ, ଜାନୁୟାରୀ) ପ୍ରକାଶ ପାଇଲା । ଏଥିରେ ରାଧାନାଥଙ୍କର "ମେଘଦୂତ" (ସଂସ୍କୃତରୁ ଅନୁବାଦ) "ଇଟାଲୀୟ ଯୁବା" (ଅନୁବାଦ-ଗଦ୍ୟ), ଓ "ବିବେକୀ" ପ୍ରବନ୍ଧ ସହିତ ମଧୁବାବୁଙ୍କର କେତେକ କ୍ଷୁଦ୍ର କବିତା (ଏଥିରୁ କେତୋଟି ଅନୁବାଦ ମଧ୍ୟ), ଓ କେତେକ ଉଚ୍ଚକୋଟୀର ପ୍ରବନ୍ଧ (ଇଂରାଜୀର ଅନୁବାଦ ଓ ଅନୁସରଣ) ସ୍ଥାନ ପାଇଥିଲେ । "ଉତ୍କଳଦର୍ପଣ" ପ୍ରକାଶର ପ୍ରାୟ ୫ ବର୍ଷପରେ "ଉତ୍କଳସଭା"ର ମୁଖପତ୍ର ସ୍ୱରୂପ ଅନ୍ୟ ଏକ ମାସିକ ସାହିତ୍ୟ ପତ୍ରିକା "ଉତ୍କଳମଧୁପ" (୧୮୭୮ ଏପ୍ରିଲ) କଟକରୁ ପ୍ରକାଶିତ ହୋଇଥିଲା । ଏଥିରେ ରାମଶଙ୍କରଙ୍କ ଅସମ୍ପୂର୍ଣ୍ଣ ଉପନ୍ୟାସ "ସୌଦାମିନୀ" (ପ୍ରଥମ ଓଡ଼ିଆ ଉପନ୍ୟାସ), "ପ୍ରେମତରଙ୍ଗ" (ଅନୁବାଦକବିତା) ଓ ମଧୁବାବୁଙ୍କ "ଜୀବନଚିନ୍ତା" କବିତା ପ୍ରକାଶିତ ହେବା ସଙ୍ଗେ ସଙ୍ଗେ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ "କୋଟୀବ୍ରହ୍ମାଣ୍ଡ ସୁନ୍ଦରୀ" କାବ୍ୟର କଠୋର ସମାଲୋଚନା ଆତ୍ମପ୍ରକାଶ କରିଥିଲା । ଯଥାର୍ଥତଃ ଆଲୋଚନା କଲେ ଜଣାଯିବ ଏହି ଦୁଇ ପତ୍ରିକା— ଉତ୍କଳଦର୍ପଣ ଓ ଉତ୍କଳମଧୁପ-କେବଳ ଦୁଇ ଦୁଇଟି ବର୍ଷ ମଧ୍ୟରେ ସାହିତ୍ୟ ସୃଷ୍ଟି ପାଇଁ ଯେଉଁ ପ୍ରେରଣା ଓ ଉନ୍ମାଦନା ଲୋକ ଚିତ୍ତରେ ଆଣି ଦେଇଥିଲେ ସେ ସୃଷ୍ଟି ଉନ୍ମାଦନା ପରବର୍ତ୍ତୀ ସମୟରେ ଏକ ବିପୁଳ ରୂପ ଧାରଣା କରିବାକୁ ସମର୍ଥ ହୋଇଥିଲା ।

କେବଳ ଦଶୋଟି ବର୍ଷ (୧୮୭୧-୮୦) ଆଧୁନିକ ଓଡ଼ିଆ ସାହିତ୍ୟର ଆଙ୍ଗିକ ଓ ଆତ୍ମିକ ରୂପ ବିଭବରେ କୌଣସି ଲକ୍ଷଣୀୟ ପରିବର୍ତ୍ତନ ଆଣି ଦେଇ ନ ଥିଲେ ସୁଦ୍ଧା ଯେଉଁ ବା ପରିବର୍ତ୍ତନ ଆଣିଥିଲେ ତାହା ଆଦୌ ଉପେକ୍ଷା କରାଯାଇ ନ ପାରେ । ଗଦ୍ୟ ଓ ପଦ୍ୟର ଅନୁବାଦ, ଗୀତି କବିତା, ଆଧୁନିକ ଗଦ୍ୟ-ସାହିତ୍ୟର ବିଶିଷ୍ଟ ଆଙ୍ଗିକ ଉପନ୍ୟାସ, ପ୍ରବନ୍ଧ, ସାହିତ୍ୟ-ସମାଲୋଚନା ପ୍ରଭୃତି ଏଇ ସମୟରେ ପ୍ରଥମେ ଜନ୍ମଲାଭ କରି ପରବର୍ତ୍ତୀ ସୃଷ୍ଟି-ସମ୍ପଦ ପାଇଁ ଅନୁକୂଳ ବାତାବରଣ ତିଆରି କରିଥିଲେ । ମୂଳ ସୃଷ୍ଟିର ଅନୁବାଦ, ତାର ଅନୁସରଣ ଓ ସର୍ବଶେଷରେ ମୌଳିକ ସୃଷ୍ଟି- କୌଣସି ନୂତନ ସାହିତ୍ୟର ପରିବୃଦ୍ଧି-ଇତିହାସରେ ଯେଉଁ ତିନୋଟି ବିଶିଷ୍ଟ ଅବସ୍ଥା ସାଧାରଣତଃ ପରିଦୃଷ୍ଟ ହୋଇଥାନ୍ତି ସେଥିରୁ ପ୍ରଥମଟି କେବଳ ୧୮୯୨-୭୦ ସାଲ ଭିତରେ ଓଡ଼ିଶାରେ ଜନ୍ମଲାଭ କରିଥିଲା । ଦ୍ୱିତୀୟ ଅବସ୍ଥା ଅର୍ଥାତ୍ ଅନୁସରଣ, ଆଲୋଚ୍ୟ ଯୁଗ (୧୮୭୧-୮୦)ରେ ଆମେ ଦେଖିବାକୁ ପାଉଁ । ମୌଳିକ ସୃଷ୍ଟି ଏଇ ଯୁଗରେ ଥିଲା ଅତିକମ୍; ଏହାର ଯଥାର୍ଥ ବିକାଶ ଘଟିଛି ୧୮୮୧-୯୪ସାଲ ମଧ୍ୟରେ । ଏତଦ୍ ବ୍ୟତୀତ ପୂର୍ବର ବଙ୍ଗଭାଷା ମିଶ୍ରିତ ଗଦ୍ୟ ଏ ସମୟରେ ସମ୍ପୂର୍ଣ୍ଣ ତିରୋହିତ ହୋଇ ନ ଥିଲେ ସୁଦ୍ଧା (୧୮୮୦ସାଲ ପରେ ମଧ୍ୟ ଏହା କେତେକ ପରିମାଣରେ ଥିଲା) ଆଧୁନିକ ଓଡ଼ିଆ ଗଦ୍ୟ ସେଇ ପ୍ରଭାବରୁ ବହୁ ପରିମାଣରେ ମୁକ୍ତ ହୋଇ ସ୍ୱତନ୍ତ୍ର ରୂପରେ ପ୍ରକାଶଲାଭ କରିଥିଲା । ଉନ୍ନତ ଚିନ୍ତା, ବଳିଷ୍ଠ ପ୍ରକାଶ-ଭଙ୍ଗୀ ଓ ସାର୍ଥକ ରୂପ ବିଭବ ବହନ କରି ପାରିବାର ଉପଯୁକ୍ତ ଶକ୍ତି ଯେ ଓଡ଼ିଆ ଗଦ୍ୟର ଅଛି ତାହା ମଧୁବାବୁଙ୍କ ପ୍ରବନ୍ଧପରି ଲେଖାମାନଙ୍କ ଦ୍ୱାରା ପ୍ରମାଣିତ ହୋଇଥିଲା । ଓଡ଼ିଆ ଗଦ୍ୟର ଏଇ ଅପୂର୍ବ ଶକ୍ତି ବିଂଶ ଶତାବ୍ଦୀରେ କେବଳ ନୀଳକଣ୍ଠଙ୍କ ଲେଖାରେ ଚରମ ସୀମାରେ ଉପନୀତ ହୋଇଥିଲା ।

ରାଧାନାଥ ଓ ମଧୁସୂଦନଙ୍କ ମିଳିତ ଉଦ୍ୟମରେ ଲେଖାଯାଇଥିବା "କବିତାବଳୀ" (୧୮୭୭, ୧୮୭୮ ଓ ୧୮୮[illegible] ସାଲରେ ତିନଥର ପ୍ରକାଶ) ପୁସ୍ତକ ଆଧୁନିକ ଓଡ଼ିଆ କବିତାର ଏକ ସାର୍ଥକ ଉଦାହରଣ । ଏ କବିତାମାନଙ୍କ ଆଙ୍ଗିକ ଓ ଆତ୍ମିକ ରୂପବିଭବ ସଂପୂର୍ଣ୍ଣ ନୂତନ, ସଂପୂର୍ଣ୍ଣ ସ୍ୱତନ୍ତ୍ର ଓ ଏକାନ୍ତଭାବେ ମୌଳିକ କବି ପ୍ରତିଭାର ଦ୍ୟୋତକ । ରାଧାନାଥଙ୍କ "ବେଣୀସଂହାର" ପୁରାଣକାହିଁରେ ଲେଖାଯାଇଥିଲେହେଁ ଏହାର ପ୍ରାଞ୍ଜଳଭାଷା, ସୁନିୟନ୍ତ୍ରିତ ଯତିପାତ (ବ୍ୟତିକ୍ରମ ଅଳ୍ପକେତେକ ସ୍ଥଳରେ ଅଛି) ଓ ଉପଧାମିଳନ ଏକ ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ । "ଆଲେକ୍‌ଜାଣ୍ଡର ସେଲକର୍କ" ଇଂରାଜୀ କବିତା ଆଶ୍ରୟରେ "ନିର୍ବାସିତର ବିଳାପ" ପ୍ରତିଷ୍ଠିତ ହୋଇଥିଲେହେଁ ଏହାର ମଧୁର ଶବ୍ଦସଂଯୋଜନ, ଲଳିତ ସ୍ୱର ଝଙ୍କାର ଓ ଭାବ ଅଭିବ୍ୟକ୍ତିର ପ୍ରାକୃତିକତା ଏହାକୁ ଏକ ସ୍ୱତନ୍ତ୍ର ମୌଳିକ ସୃଷ୍ଟିରେ ପରିଣତ କରିଦେଇଛି । ଇଂରାଜୀସାହିତ୍ୟର ଏକାନ୍ତରମେଳ (ଆକାଶପ୍ରତି) ଓ ସ୍ପେନସରୀୟାନ ଷ୍ଟାଞ୍ଜା (ନିଶୀଥଚିନ୍ତା) ଏଥିରେ ସ୍ଥାନ ପାଇଛନ୍ତି । "ଭାରତୀବନ୍ଦନା" କବିତାର ରୂପଗତ ଓ ଛନ୍ଦଗତ ବୈଚିତ୍ର୍ୟ ଏ ସାହିତ୍ୟରେ ସଂପୂର୍ଣ୍ଣ ନୂତନ । ଏ କବିତାଗୁଡ଼ିକର ଆତ୍ମିକ ପରିବେଶ ମଧ୍ୟ ଅତୀବ ରୁଚିର ଓ ଚମତ୍କାର । ଆଦିରସ ବହୁଳ ପୁରାତନ ଓଡିଆ ସାହିତ୍ୟରେ କେବଳ ପୁରାଣମାନଙ୍କର ସ୍ଥଳବିଶେଷରେ ବୀରରସର ଅବତାରଣା କରାଯାଇଛି । ଯେଉଁ ଜାତୀୟତା ଭାବଧାରା ପ୍ରଥମେ ବଙ୍ଗ ସାହିତ୍ୟରେ ଦେଖା ଦେଇଥିଲା ତାର ପ୍ରଥମ ସଂକେତ ଆମେ ଦେଖୁଁ "ବେଣୀସଂହାର" ଓ "ଶିବାଜୀଙ୍କ ଉତ୍ସାହ ବାଣୀ" କବିତାରେ । ପ୍ରାଚୀନ ସାହିତ୍ୟରେ କରୁଣରସ ଶୃଙ୍ଗାରରସର ଅନୁସରଣ କରିଥାଏ; କିନ୍ତୁ "ନିର୍ବାସିତର ବିଳାପ" ଓ "ସୀତାବନବାସ"ରେ ଏହା ସ୍ୱାଧୀନ, ସ୍ୱତନ୍ତ୍ର ରୂପରେ ପ୍ରତିଷ୍ଠିତ ।

"ଜୀବନଚିନ୍ତା", ବିଶେଷତଃ "ଆକାଶପ୍ରତି" କବିତାରେ ଈଶ୍ୱରଙ୍କ ଧର୍ମଧାରଣାର ସଂକେତ ଥିଲେସୁଦ୍ଧା ବ୍ରାହ୍ମଧର୍ମାବଲମ୍ବୀ ମଧୁସୂଦନଙ୍କ ବ୍ରାହ୍ମଧର୍ମର ଅଭିମତ ସେଥିରେ କବିତାରୂପରେ ରୂପାୟିତ ହୋଇଛି । "ଶରତପ୍ରଭାତ" କବିତାରେ ଥିବା ପଲ୍ଲୀ ବିଷୟବସ୍ତୁ, କବିତାର ବିଷୟବସ୍ତୁ ଦୃଷ୍ଟିରୁ, ଏକ ଅଭିନବ ବ୍ୟତିକ୍ରମ ବ୍ୟତୀତ ଅନ୍ୟ କିଛି ନୁହେଁ । ଧନିକ ଶ୍ରେଣୀର ଜୀବନ ଯେଉଁ ସାହିତ୍ୟର ପ୍ରଧାନ ଉପଜୀବ୍ୟ ବିଷୟ, ସେ ସାହିତ୍ୟରେ ପଲ୍ଲୀ ବିଷୟ ଏକ ନୂତନ ବିପ୍ଳବ ବ୍ୟତୀତ ଆଉ କଣ ହୋଇପାରେ ? ଏ କବିତା-ଗୁଡ଼ିକର ଆଙ୍ଗିକ ଓ ଆତ୍ମିକ ରୂପବିଭବକୁ ବିଶ୍ଳେଷଣ କଲେ ଆମେ ଆଧୁନିକ କବିତାର ଆଭିମୁଖ୍ୟ ଓ ଭାବ ଅଭିବ୍ୟକ୍ତିର ସ୍ୱରୂପ ଉପରେ କିଛି କିଛି ଧାରଣା କରିପାରୁଁ ।

**ଆଧୁନିକ ଓଡ଼ିଆସାହିତ୍ୟର ପ୍ରାଣ-ପ୍ରତିଷ୍ଠା-ଯୁଗ ବା ସାହିତ୍ୟବିକାଶର ପ୍ରଥମ ପର୍ଯ୍ୟାୟ (୧୮୮୧-୯୫):—** ଦଶବର୍ଷ ( ୧୮୭୧-୮୦ ) ମଧ୍ୟରେ ଉତ୍କଳଦର୍ପଣ (୧୮୭୩), ଉତ୍କଳମଧୁପ (୧୮୭୮) ମାସିକ ପତ୍ରିକା ଓ ଦୀପିକା (୧୮୬୬), ବାଲ୍ୱିକା (୧୮୬୮); ଉତ୍କଳପୁତ୍ର (୧୮୭୩), ସ୍ୱଦେଶୀ (୧୮୭୩) ପ୍ରଭୃତି ସାପ୍ତାହିକ ଓ ପାକ୍ଷିକ ପତ୍ରିକା ସାହିତ୍ୟ ସୃଷ୍ଟି ପାଇଁ ଯେଉଁ ଉନ୍ମାଦନାର ବାୟୁମଣ୍ଡଳ ସୃଷ୍ଟି କରିଥିଲେ ତାର ଆଶୁ ପରିଣତି ସ୍ୱରୂପ ପରବର୍ତ୍ତୀ ୧୫ ବର୍ଷ (୧୮୮୧-୯୫) ମଧ୍ୟରେ ଆଧୁନିକ ସାହିତ୍ୟ ଏକ ସୁସ୍ଥିର ମୂଳଭିତ୍ତି ଉପରେ ପ୍ରତିଷ୍ଠିତ ହୋଇପାରିଥିଲା । ଆଲୋଚ୍ୟ ଯୁଗ ଯଥାର୍ଥତଃ ସାହିତ୍ୟର ପ୍ରାଣ-ପ୍ରତିଷ୍ଠାର ଯୁଗ । ନାଟକ, ଉପନ୍ୟାସ, କାବ୍ୟ, ଗୀତିକବିତା, ସମାଲୋଚନା, ଭ୍ରମଣ ଓ ପ୍ରବନ୍ଧ ସାହିତ୍ୟ ପ୍ରଭୃତି ଆଧୁନିକ ସାହିତ୍ୟର ବିଭିନ୍ନ ବିଭାଗ

ଏହି ସମୟ୍ ମଧ୍ୟରେ ଏକ ଏକ ସ୍ୱତନ୍ତ୍ର ଓ ଦୃଷ୍ଟି ରୂପ ବିଭବରେ ମହିମାନ୍ୱିତ ହୋଇ ପଡ଼ିଥିଲେ । ପୂର୍ବର ବଙ୍ଗଳା ମିଶା ଓଡ଼ିଆ ଭାଷା ଏହି ସମୟରେ ସମ୍ପୂର୍ଣ୍ଣ ଭାବେ ତିରୋହିତ ହୋଇ ନ ଥିଲେହେଁ ଶୁଦ୍ଧ ଓ ଅନାବିଳ ଓଡ଼ିଆ ଗଦ୍ୟ ଲୋକ ଚକ୍ଷୁରେ ସମ୍ମାନିତ ହୋଇଥିଲା । ମଧୁସୂଦନଙ୍କ "ପ୍ରବନ୍ଧମାଳା" (୧୮୮୦), ଧର୍ମତତ୍ତ୍ୱ ମୂଳକ ଅନ୍ୟାନ୍ୟ ପ୍ରବନ୍ଧ ଓ "ନବ ସମ୍ବାଦ" (୧୮୮୭) ପ୍ରଭୃତିର ଗୁରୁଗମ୍ଭୀର ଶୁଦ୍ଧ ଭାଷା ଓଡ଼ିଆ ଗଦ୍ୟର ପ୍ରାକୃତିକ ବିକାଶ ଦିଗରେ ଅଶେଷ ସହାୟକ ହୋଇଥିଲେ । ରାଧାନାଥଙ୍କ "ଭ୍ରମଣକାରୀର ପତ୍ର" (୧୮୮୭) କମ୍ବା ପୁସ୍ତକଗତ ସମାଲୋଚନା ପରିମାଣରେ ବେଶି ନ ହେଲେହେଁ ଉପାଦେୟତାରେ ଆଦୌ ନ୍ୟୂନ ନ ଥିଲେ । ରାମଶଙ୍କର ରାୟଙ୍କ "କାଞ୍ଚିକାବେରୀ" ନାଟକ (୧୮୮୧), "ବନବାଳା" (୧୮୮୨) ଓ "କଳିକାଳ" (୧୮୮୩) ପ୍ରହସନ; ଉମେଶଚନ୍ଦ୍ର ସରକାରଙ୍କ "ପଦ୍ମମାଳୀ" (୧୮୮୮) ଉପନ୍ୟାସ; ମଧୁସୂଦନଙ୍କ "ଭାରତ ବନ୍ଦନା" (୧୮୮୩), "ଆକାଶ ପ୍ରତି" (୧୮୮୪), "ନବ ସମ୍ବାଦ" (୧୮୮୭), "ଆଶା" (୧୮୮୮), ପ୍ରଭୃତି ଧର୍ମଭାବ ମୂଳକ ଉଚ୍ଚ ଚିନ୍ତାଶ୍ରୟୀ ଗୀତି କବିତା ଆଲୋଚ୍ୟ ଯୁଗର ଶ୍ରେଷ୍ଠ ନିଦର୍ଶନ । ଏହି ସମୟରେ କେତେକ ନବୀନ ଲେଖକ ମଧ୍ୟ ଆବିର୍ଭାବ ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ ମଣିଚରଣ ମହାପାତ୍ର, ଚନ୍ଦ୍ରମୋହନ ମହାରଣା, ସାଧୁଚରଣ ରାୟ, ରେବା ରାୟ (ଲେଖିକା) ପ୍ରଧାନ । ଓଡ଼ିଆ ଗୀତି କବିତାର ଅଭ୍ୟୁଦୟ-ଇତିହାସରେ ଏମାନଙ୍କ ନିରଳସ ଅଧ୍ୟବସାୟ ଏକାନ୍ତ ସ୍ମରଣୀୟ । ସାହିତ୍ୟର ସମସ୍ତ ବିଭାଗ ଅପେକ୍ଷା, ସୃଷ୍ଟି ସୌରଭ ପ୍ରତିଷ୍ଠା ଦୃଷ୍ଟିକୋଣରୁ, ଏ ଯୁଗର କାବ୍ୟହିଁ ଆଜି ସମସ୍ତଙ୍କର ନମସ୍ୟ ହୋଇ ରହିଛନ୍ତି । ରାଧାନାଥ ରାୟ ଏ କ୍ଷେତ୍ରରେ ଜଣେ ଅପ୍ରତିଦ୍ୱନ୍ଦୀ ସ୍ରଷ୍ଟା । ତାଙ୍କର "କେଦାର ଗୌରୀ"

(୧୮୮୬), "ନନ୍ଦବଶଗା" (୧୮୮୬), "ନନ୍ଦକେଶଶ୍ଳୀ" (୧୮୮୭), "ଜଷା" (୧୮୮୮), "ପାର୍ବଣ୍ଡୀ" (୧୮୯୦), କାବ୍ୟ ସମଗ୍ର ଆଧୁନିକ ଓଡ଼ିଆ ସାହିତ୍ୟରେ ଏକ ଏକ ସମୁଜ୍ଜ୍ୱଳ ରତ୍ନ ।

୧୮୮୧-୯୦ ସାଲ ଭିତରେ ଯେଉଁ ସାହିତ୍ୟ ଏକ ଅଭିନବ ରୂପ-ବିଭବରେ ବିମଣ୍ଡିତ ହୋଇ ଅପୂର୍ବ ଅଭିବୃଦ୍ଧି ଦିଗରେ ଗତି କରିଥିଲା ତା'ର ସାର୍ଥକ ଓ ପରିପୂର୍ଣ୍ଣ ବିକାଶ ଘଟିଥିଲା ୧୮୯୧-୯୫ ସାଲ ଭିତରେ । "ଉତ୍କଳ ପ୍ରଭା" (୧୮୯୧) ମାସିକ ପତ୍ରିକା ଏହି ସାହିତ୍ୟ ବିକାଶର ପ୍ରଧାନ ହେତୁ । ଏହାର ୨୦ ବର୍ଷ ପୂର୍ବରୁ ଯୁବ-ଚିତ୍ତରେ ଯେଉଁ ନୂତନ ସୃଷ୍ଟି-ଉନ୍ମାଦନା ଜନ୍ମଲାଭ କରି ବିଭିନ୍ନ ଦିଗରେ ବିକାଶ ଲାଭ କରି ଆସୁଥିଲା ତାହା ଏହି ମାସିକ ପତ୍ରିକାକୁ ଆଶ୍ରୟ କରି ଏକ ପରିପୂର୍ଣ୍ଣ ଅବସ୍ଥାରେ ଉନ୍ମୋଚିତ ହୋଇଥିଲା । ରାମଶଙ୍କରଙ୍କ "ବିବାସିନୀ" (୧୮୯୧) ଉପନ୍ୟାସ, ବିଜୟ ମଜୁମଦାର, ବିଶ୍ୱନାଥ କର, ଗଣପତି ଦାସ, ଲାଲ ରାମ-ନାରାୟଣ ରାୟ ପ୍ରଭୃତିଙ୍କ ବିଭିନ୍ନ ପ୍ରବନ୍ଧ, ମଧୁସୂଦନଙ୍କ "ଋଷିପ୍ରାଣେ ଦେବାବତରଣ" (୧୮୯୧) ଦାର୍ଶନିକ ଗୀତି-କବିତା, ସର୍ବୋପରି ରାଧାନାଥଙ୍କ "ଚିଲିକା" (୧୮୯୧), "ମହାଯାତ୍ରା" (୧୮୯୨) ଓ "ଯଯାତିକେଶରୀ" (୧୮୯୪) କାବ୍ୟ ଓଡ଼ିଆ ସାହିତ୍ୟରେ ଆଜି ଯେଉଁ ଆସନ ଗ୍ରହଣ କରିଛନ୍ତି ତାହା ଅତି କମ୍ ଲେଖାର ଭାଗ୍ୟରେ ଦେଖିବାକୁ ମିଳେ । ରାଧାନାଥଙ୍କ ପ୍ରତିଭା-ସ୍ଫୁରଣର ଚରମ ବିକାଶ ଘଟିଛି ଏହି ସମୟରେ । ପୂର୍ବରୁ ବିକାଶ ଲାଭ କରି ଆସୁଥିବା ମଧୁସୂଦନଙ୍କ ଗୀତି କବିତା ଏହି ସମୟରେ ମଧ୍ୟ ପରିଣତି-ପଥରେ ଧାବିତ ହେବାକୁ ଆରମ୍ଭ କରିଛି । ସୁତରାଂ କୁହାଯାଇପାରେ ଯେ ୧୮୮୧-୯୫ ଯୁଗର ପ୍ରଥମ ଭାଗ ହେଉଛି

ଆଧୁନିକ ସାହିତ୍ୟର ପ୍ରାଥମିକ ଉନ୍ମେଷର ଯୁଗ ଓ ଏହାର ଶେଷ ଭାଗ ହେଉଛି ତାର ଚୂଡ଼ାନ୍ତୋନ୍ମେଷଣର ଯୁଗ । ସମଗ୍ର ଊନବିଂଶ ଶତାବ୍ଦୀରେ ଯେଉଁମାନେ ଆଧୁନିକ ସାହିତ୍ୟକୁ ଋଦ୍ଧିମନ୍ତ ତଥା ବିକାଶ-ମୁଖୀ ଅବସ୍ଥାରେ ରଖି ଦେଇଥିଲେ ସେମାନଙ୍କ ମଧ୍ୟରେ ରାଧାନାଥ ଓ ମଧୁସୂଦନ ହେଉଛନ୍ତି ଅଗ୍ରଗଣ୍ୟ ।

## ନୂତନଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ:—

ରାଧାନାଥରାୟ (୧୮୪୮-୧୯୦୮) ଏଫ୍. ଏ. ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ ସୁଦ୍ଧା ଜୀବନରେ ଇଂରାଜୀ ସାହିତ୍ୟ, ଗ୍ରୀକ୍ ସାହିତ୍ୟ (ଇଂରାଜୀ ମାଧ୍ୟମରେ), ବଙ୍ଗଳା, ହିନ୍ଦୀ, ସଂସ୍କୃତ ତଥା ପୁରାତନ ଓଡ଼ିଆ କାବ୍ୟଯୁଗ ସାହିତ୍ୟ ଉପରେ ସେ ବିଶେଷ ଦକ୍ଷତା ଅର୍ଜ୍ଜନ କରିଥିଲେ । ତାଙ୍କର ସମଗ୍ର କୃତିରେ ବିଶାଳ ପାଣ୍ଡିତ୍ୟ, ବହୁ ଅଧ୍ୟୟନ ଶୀଳତା ଓ ଗଭୀର ଅନ୍ତର୍ଦୃଷ୍ଟିର ପରିଚୟ ଆମେ ଅନୁଭବ କରିଥାଉଁ । ୧୮୬୪ସାଲରୁ ୧୯୦୩ସାଲ ପର୍ଯ୍ୟନ୍ତ ଅର୍ଥାତ୍ ଦୀର୍ଘ ୪୦ବର୍ଷ କାଳ ସେ ଶିକ୍ଷା ବିଭାଗ ସହିତ ସଂପୃକ୍ତ ଥିଲେ । ଏଥିରୁ ପ୍ରଥମ ୮ବର୍ଷ କାଳ ସେ ଶିକ୍ଷକ ଥିଲେ; ଅବଶିଷ୍ଟ ୩୨ବର୍ଷ କାଳ ସେ ଶିକ୍ଷା ବିଭାଗର ପରିଦର୍ଶକ ଭାବରେ ସମଗ୍ର ଓଡ଼ିଶା ପରିଭ୍ରମଣ କରିବାର ସୌଭାଗ୍ୟ ଲାଭ କରିଥିଲେ । ବିଶାଳ ପାଣ୍ଡିତ୍ୟ ଓ ପ୍ରକୃଷ୍ଟ ସୃଷ୍ଟି ପ୍ରତିଭା ସହିତ ଜୀବନରେ ବହୁସ୍ଥାନ ପରିଭ୍ରମଣ କରିବାର ବାସ୍ତବ ଓ ଜୀବନ୍ତ ଅନୁଭୂତି ମିଳିତ ହୋଇ ନୂତନ ଓ ସ୍ୱତନ୍ତ୍ର କାବ୍ୟ ସୃଷ୍ଟି କରିବାକୁ ତାଙ୍କୁ ଅପୂର୍ବ ସୁଯୋଗ ଦେଇଥିଲା । ଇଂରାଜୀ ସାହିତ୍ୟର ସ୍କଟଙ୍କ ପରି ଓଡ଼ିଶାର ଅଜ୍ଞାତ ଇତିହାସ, ପାରମ୍ପରିକ ଗୀତିମାନ, ବିଶେଷତଃ

ଅଗୋଚର କାହାଣୀ କିମ୍ବଦନ୍ତୀ ପ୍ରଥମ ହୋଇ ଏହାଙ୍କ ହସ୍ତରେ ଜୀବନ୍ତ ରୂପେ ଚିତ୍ରିତ ହେଲେ । ଓଡ଼ିଶାର ଗିରି-କାନନ, ହ୍ରଦ-ପୁଷ୍କରିଣୀ, ନଦୀ- ନିର୍ଝରିଣୀ ପ୍ରଭୃତି ପ୍ରକୃତିର ବିଭିନ୍ନ ବିଭାଗ ଏକ ଏକ ଅନିନ୍ଦନୀୟ ବିଭାରେ ଓ ନବ ନବ 'ରୂପ-ସମ୍ପଦରେ ପ୍ରଥମ ହୋଇ ଏହାଙ୍କ ହସ୍ତରେ ବିଭୂଷିତ ହୋଇ ଉଠିଲେ । ସାର୍ଥକ ରସବୋଧ ସହିତ ପ୍ରକୃତି ଅଧ୍ୟୟନରେ ବାସ୍ତବ ଅନୁଭୂତି ତାଙ୍କର ଯଦି ନ ଥାନ୍ତା ତା ହେଲେ ତାଙ୍କ ସାହିତ୍ୟର ପ୍ରକୃତି ଚିତ୍ରଣ ଏପରି ଜୀବନ୍ତ ଓ ମନୋହର ହୋଇ ପାରିଥାନ୍ତା ବୋଲି ମନେହୁଏ ନାହିଁ ।

ରାଧାନାଥ-ସାହିତ୍ୟର ରୂପ-ବିଭବ ସମ୍ପୂର୍ଣ୍ଣ ଅଭିନବ, ଅସାଧାରଣ ଓ ନୂତନ ବୈଶିଷ୍ଟ୍ୟରେ ଗଠିତ ନ । ଆଳଙ୍କାରିକ ଭାଷା, କାବ୍ୟଗତ ନାୟକ ନାୟିକାଙ୍କ ବୃନ୍ଦ ଜନ୍ମ ଇତିହାସ ( ସବୁ କାବ୍ୟରେ କିନ୍ତୁ ନୁହେଁ ), କାବ୍ୟରେ ଶୃଙ୍ଗାର ରସର ଆଧିକ୍ୟ, ବହୁ ସ୍ଥଳରେ ସଂସ୍କୃତ ଓ ପୁରାତନ ଓଡ଼ିଆ ସାହିତ୍ୟର ଶ୍ଳୋକଗତ ଅନୁବାଦ ବା ଅନୁସରଣ, ପାରମ୍ପରିକ କାବ୍ୟରୀତି ଅନୁସରଣରେ ସାମନ୍ତବାଦୀ ସଭ୍ୟତାର ଚିତ୍ରାଙ୍କନ—ଏମିତି କେତୋଟି ବହିରଙ୍ଗ ସାହିତ୍ୟକ-ଉପାଦାନ ନିରୀକ୍ଷଣ କରି ଏ ସାହିତ୍ୟକୁ ପୁରାତନ କାବ୍ୟଧାରାର ଶେଷ ପ୍ରତିଧ୍ୱନି ବୋଲି ଗ୍ରହଣ କରିବାକୁ ସ୍ୱତଃ ଇଚ୍ଛା ହୁଏ । କିନ୍ତୁ ମଧ୍ୟଯୁଗ ଓ ରାଧାନାଥ-ସାହିତ୍ୟ ଭିତରେ ଥିବା ଏହି ସାମ୍ୟକୁ ବାଦ ଦେଇ ଏ ଉଭୟ ସାହିତ୍ୟ-ସୃଷ୍ଟିର ଲକ୍ଷ୍ୟ, ସେମାନଙ୍କ ଜନ୍ମର ଇତିହାସ ବା ସୃଷ୍ଟି-ଉତ୍ସ, ଉଭୟଙ୍କ ରସାସ୍ୱାଦନ, ଛନ୍ଦର ରୂପ ବୈଚିତ୍ର୍ୟ, ବିଷୟବସ୍ତୁର ନିର୍ବାଚନ, ସର୍ବୋପରି କାବ୍ୟର ସମଗ୍ର ରସ-ଘନ-ରୂପ ଉପରେ ଦୃଷ୍ଟି

ନରୀକ୍ଷଣ କଲେ ଉପରୋକ୍ତ ଅଭିମତର ଅସାରତା ସ୍ୱତଃ ପ୍ରତିପନ୍ନ ହୁଏ । କବିବର ରାଧାନାଥଙ୍କ ସୃଷ୍ଟିର ଅନ୍ତର୍ଦୃଷ୍ଟି, କଳା ସୌନ୍ଦର୍ଯ୍ୟପ୍ରତିଷ୍ଠାରେ ସୂକ୍ଷ୍ମ ବସ୍ତୁର ବୋଧ ଓ ସାର୍ଥକ ରସ-ପିପାସା ଯେ ପାଶ୍ଚାତ୍ୟ-ସାହିତ୍ୟର ନିରନ୍ତର ଅଧ୍ୟୟନ ହେତୁ ସମ୍ଭବପର ହୋଇଥିଲା ଏଥିରେ ସନ୍ଦେହ ନାହିଁ । ନୂତନ ଯୁଗର ପ୍ରାରମ୍ଭରେ ଅବସ୍ଥାନ କରିଥିବା ହେତୁ ସେ ପ୍ରାଚ୍ୟ ସାହିତ୍ୟର ସାରାଂଶ ସଂଗ୍ରହ କରିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ଏହି ସାରାଂଶହିଁ ତାଙ୍କ କାବ୍ୟ-କୀର୍ତ୍ତିର ସମୁଜ୍ଜ୍ୱଳ ନିଦର୍ଶନ ନୁହେଁ; ଏହା ତାଙ୍କ ସାହିତ୍ୟର ବହିରଙ୍ଗ ମାତ୍ର । ରାଧାନାଥ-ସାହିତ୍ୟର ଯଥାର୍ଥ ରୂପ-ବିଭବ ଓ ସାର୍ଥକ ସୃଷ୍ଟି-ସୌନ୍ଦର୍ଯ୍ୟ ଯେଉଁ ବିଦେଶୀ ସାହିତ୍ୟ ଦ୍ୱାରା ସଂବୃଦ୍ଧ ତାହାହିଁ ତାଙ୍କ ସାହିତ୍ୟ-ସୃଷ୍ଟିର ଆଦି ଉତ୍ସ । ଏ ଉତ୍ସ ଯେମିତି ବୈଚିତ୍ର୍ୟମୟ ଓ ନିତ୍ୟ ନୂତନତାରେ ପରିପୂର୍ଣ୍ଣ ତାର ଆଦର୍ଶରେ ଗଢ଼ି ଉଠିଥିବା ରାଧାନାଥଙ୍କ ସାହିତ୍ୟ-ସୃଷ୍ଟି ସେମିତି ଅଭିନବ ଓ ମନୋମୁଗ୍ଧକର ।

ରାଧାନାଥ ଓ ରାଧାନାଥ-ସାହିତ୍ୟ ପ୍ରାଚ୍ୟ-ପାଶ୍ଚାତ୍ୟ ସଭ୍ୟତା-ସଂଘର୍ଷର ଏକ ଏକ ଅମୃତମୟ ଫଳ । ଏ ସଭ୍ୟତା-ସଂଘର୍ଷ ଭାରତର ଯେଉଁ ପ୍ରଦେଶରେ ଯେତେ ତୀବ୍ରତର ହୋଇଛି ସେଠି ଆଧୁନିକ ଶିକ୍ଷା ଓ ସେହି ଶିକ୍ଷା-ପ୍ରସୂତ ଏକ ନୂତନ ଆଧୁନିକ ସାହିତ୍ୟ ସେତେ ଶୀଘ୍ର ବିକାଶ ଲାଭ କରିଛି । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏ ସଭ୍ୟତା ସଂଘର୍ଷର କାର୍ଯ୍ୟକାରିତା ସର୍ବ ପ୍ରଥମେ ସାର୍ଥକ ଭାବେ ରାଧାନାଥଙ୍କଠାରେ ପରିଲକ୍ଷିତ ହୋଇଛି । "କେଦାରଗୌରୀ", "ଚନ୍ଦ୍ରଭାଗା", "ନନ୍ଦିକେଶରୀ", "ଉଷା", "ପାର୍ବତୀ" ଓ "ଯଯାତିକେଶରୀ" କାବ୍ୟର କଥା ବସ୍ତୁରେ, 'ଚିଲିକା'ର ପରିବେଶ ଓ

ପରିପ୍ରକାଶର ଅନ୍ତର୍ଦୃଷ୍ଟିରେ, 'ମହାଯାତ୍ରା' କାବ୍ୟର ଛନ୍ଦ ବୈଚିତ୍ର୍ୟ ଓ ସୃଷ୍ଟି-ପରିକଳ୍ପନାରେ ଏ ସଭ୍ୟତା-ସଂଘର୍ଷ ଅତି ସ୍ପଷ୍ଟ ଭାବେ ଅନୁଭୂତ ହୋଇଥାଏ । ରାଧାନାଥଙ୍କ କାବ୍ୟର ବିଷୟବସ୍ତୁ ଓ ସୃଷ୍ଟି-ଆଦର୍ଶ ପାଶ୍ଚାତ୍ୟ-ସାହିତ୍ୟର ବିଷୟବସ୍ତୁ ଓ ଆଦର୍ଶରେ ଗଢ଼ି ଉଠିଥିଲେହେଁ ଏ କାବ୍ୟ ପଠନ ବେଳେ ଏମାନଙ୍କଠାରେ ବୈଦେଶିକତାର କୌଣସି ସୂଚନା ସାଧାରଣତଃ ଦେଖିବାକୁ ମିଳେନାହିଁ । ଦେଶର କାହାଣୀ କିମ୍ବଦନ୍ତୀ, ଭୌଗୋଳିକ ପରିବେଶ ଓ ଇତିହାସ ଭିତରେ ବିଦେଶୀ କଥାବସ୍ତୁକୁ କବି ଏପରି ସୁମଞ୍ଜୁଳ ଓ ସୁମଧୁର ଭାବେ ମିଶ୍ରଣ କରି ଦେଇଛନ୍ତି ଯେ ଏ କାବ୍ୟମାନଙ୍କୁ ଏ ଦେଶ ମାଟିର ଯଥାର୍ଥ ସନ୍ତାନ ରୂପେ ଗ୍ରହଣ କରିବାରେ ହଠାତ୍ କୌଣସି ଆପତ୍ତି ଆସେ ନାହିଁ । କଥାକାର ଓ ଶିଳ୍ପ ନିପୁଣ ରାଧାନାଥଙ୍କ ସୃଷ୍ଟି ପ୍ରତିଭାର ଏ ଅପୂର୍ବ କାବ୍ୟ-ନିର୍ମାଣ-କ୍ଷମତା କେବଳ ଓଡ଼ିଆ ସାହିତ୍ୟ କାହିଁକି ସମଗ୍ର ଊନବିଂଶ ଶତାବ୍ଦୀର ସମୃଦ୍ଧ ବଙ୍ଗ ସାହିତ୍ୟରେ ମଧ୍ୟ ମିଳିବା ସମ୍ଭବପର ନୁହେଁ ।

ରାଧାନାଥଙ୍କ ସୃଷ୍ଟି-ଦୃଷ୍ଟି-ଭଙ୍ଗୀର ପ୍ରଧାନ ଉତ୍ସ ବିଦେଶୀ ସାହିତ୍ୟ ଥିବାରୁ ତାଙ୍କ ସୃଷ୍ଟ ଚରିତ୍ରମାନଙ୍କ କ୍ରିୟାକଳାପରେ ଏ ଦେଶର ସାମାଜିକ ମୀତି ନିୟମ, ଆଚାର, ବ୍ୟବହାର ଓ ଜୀବନ ଧର୍ମର ଅସଂପୃକ୍ତତା ନିରୀକ୍ଷଣ କରି ଲୋକେ ସେ ସାହିତ୍ୟକୁ ପ୍ରଥମେ ସମଧିକ ସମ୍ମାନ ଦେଖାଇ ପାରି ନ ଥିଲେ । ପିତା-ମାତାଙ୍କ ବିନାନୁମତିରେ କେଦାର ଓ ଗୌରୀର ପ୍ରେମ ଏବଂ ସେଇ ସ୍ୱାଧୀନ ପ୍ରେମର ପରିଣତି ସ୍ୱରୂପ ସେମାନଙ୍କର ମୃତ୍ୟୁ; କୋଣାର୍କର ଅଧିଦେବତା ପ୍ରେମୋନ୍ମତ୍ତ ଅର୍କ ଦେବଙ୍କର ଋଷିକୁମାରୀ

ଚନ୍ଦ୍ରଭାଗାର ଅନୁଧାବନ, ଚନ୍ଦ୍ରଭାଗାର ଆତ୍ମରକ୍ଷାର୍ଥେ ଜଳ ନିମଜ୍ଜନ ଓ ପରିଶେଷରେ ଅର୍କ ମନ୍ଦିରର ଅଧଃପତନ ରାଜନନ୍ଦିନୀ ନନ୍ଦକେଶରୀର ବିଧର୍ମୀ ଶତ୍ରୁଠାରେ ପ୍ରେମ ନିବେଦନ, ପିତାଙ୍କ ଜୈବମଣି ଅପହରଣ ଓ ପରିଶେଷରେ ପ୍ରତ୍ୟାଖ୍ୟାତା ନନ୍ଦକେଶରୀର ଆତ୍ମହତ୍ୟା; ଯୋଦ୍ଧୃବେଶୀ ଉଷାର ପୁରୁଷୋଚିତ କର୍କଶ ଜୀବନ ଯାପନ, ରାଜକୁମାରମାନଙ୍କ ସହ ତାର ଦୌଡ଼ ପ୍ରତିଯୋଗିତାରେ ଯୋଗଦାନ ଓ ପରିଶେଷରେ ଜୟନ୍ତ ଓ ଉଷାର ମୃତ୍ୟୁ; ଉତ୍କଳ ଗଙ୍ଗବଂଶ ନରପତି ଗଙ୍ଗେଶ୍ୱର ଦେବଙ୍କ ନିଜ କନ୍ୟା କୌଶଲ୍ୟା ସହ ପାପପ୍ରଣୟାସକ୍ତି ଓ ରାଣୀ ପାର୍ବତୀଙ୍କର ପତିହତ୍ୟା; ଯଯାତିକେଶରୀଙ୍କର ନାରୀ ବେଶରେ ଲଳିତା ସହିତ ପ୍ରେମୋପଭୋଗ, ରାଧାନାଥଙ୍କ ସାହିତ୍ୟର ଏଇ କଥାବସ୍ତୁ ଭିତରେ ଲୋକେ ଏ ଦେଶର ଜାତୀୟ ପରମ୍ପରା ଓ ସଂସ୍କୃତି ସଂପୂର୍ଣ୍ଣ ବ୍ୟାହତ ହୋଇଥିବାର ଦେଖିବାକୁ ପାଇଥିଲେ । ଯେଉଁ ସମୟରେ ଏକ ବଳିଷ୍ଠ ଜାତୀୟତା ଭାବ ଏ ଦେଶର ଶିକ୍ଷିତ ଲୋକ-ଚିତ୍ତକୁ ଉନ୍ମାଦିତ କରି ରଖିଥିଲା, ରାଧାନାଥଙ୍କର ଦୁର୍ଭାଗ୍ୟ, ସେଇ ସମୟରେ ତାଙ୍କ ସାହିତ୍ୟର ପ୍ରକାଶ ଘଟିଥିଲା । ଫଳରେ ସେମାନେ ଏଇ ଜାତୀୟତା-ମାନଦଣ୍ଡରେ ସେ ସାହିତ୍ୟର ବିଚାର କରି ତାଙ୍କୁ ନିନ୍ଦା କରିବାକୁ ଲାଗିଲେ । ସୃଷ୍ଟି-ସୌନ୍ଦର୍ଯ୍ୟ-ପିପାସୁ, କଳାକାର ରାଧାନାଥଙ୍କ ଅମଳିନ କବି-ପ୍ରତିଭା ଏପରି ବିଚାରରେ ଯେ ଅସମ୍ମାନିତ ହୋଇଛି, ଏଥିରେ ସନ୍ଦେହ ନାହିଁ । ସ୍ୱାଧୀନ ନର ନାରୀଙ୍କ ଚିତ୍ତ ବୃତ୍ତିର ସ୍ୱାଭାବିକ ପରିପ୍ରକାଶ, ରାଜପ୍ରାସାଦ-ବନ୍ଦିନୀ ରାଜକୁମାରୀର ନାରୀତ୍ୱ ପ୍ରତିଷ୍ଠାରେ ସାର୍ଥକତା ପ୍ରତିପାଦନ, ପ୍ରେମ ପ୍ରକାଶ ଭିତରେ ସୂକ୍ଷ୍ମତମ ହୃଦ ସ୍ପନ୍ଦନର ଚିତ୍ରଣ, ମାନବିକ ସହଜ ଦୋଷ ଦୁର୍ବଳତା ଭିତରେ ଜୀବନର

ସୂକ୍ଷ୍ମ ବିକାଶ—ଏ ସବୁ ଏ ଦେଶର ପାରମ୍ପରିକ କାବ୍ୟ ଉପାଦାନରେ ବ୍ୟତିକ୍ରମ ବ୍ୟତୀତ ଅନ୍ୟ କିଛି ନୁହେଁ । କିନ୍ତୁ ଏହି ବ୍ୟତିକ୍ରମ ଭିତରେ ତାଙ୍କର ବଳିଷ୍ଠ କବିପ୍ରତିଭା ସମୁଜ୍ଜ୍ୱଳ ଭାବେ ପ୍ରକଟିତ ହେଉଛି । ଫଳରେ ଯିବେ ଯାହା ଥିଲା ସମ୍ପୂର୍ଣ୍ଣ ବିଦେଶୀ, ଅମର କବିଙ୍କ ଅମୃତ କରସ୍ପର୍ଶରେ ଦେଶୀ ବାୟୁମଣ୍ଡଳରେ ତାହା ହୋଇଉଠିଲା ଏ ଦେଶର ଖାଣ୍ଟି ସନ୍ତାନ । ମୂଳ ବିଷୟବସ୍ତୁଟି ସମ୍ପୂର୍ଣ୍ଣ ନିର୍ଜୀବ ହୋଇ ତାଙ୍କ କାବ୍ୟମାନଙ୍କୁ ଦେଇଛି ଏକ ସ୍ୱତନ୍ତ୍ର ରୂପ-ବିଭବ ଯାହା ଏ ଦେଶ ମାଟିରେ ଥିଲା ସମ୍ପୂର୍ଣ୍ଣ ସ୍ୱପ୍ନ । ରାଧାନାଥସାହିତ୍ୟ ପର୍ଯ୍ୟାଲୋଚନା କଲାବେଳେ ନିମ୍ନୋକ୍ତ ତିନୋଟି ବିଷୟ ପ୍ରତି ବିଶେଷ ଦୃଷ୍ଟିଦେବା ଆବଶ୍ୟକ । ଯଥା:—(କ) ଆହୃତ କଥା ବସ୍ତୁ ଭିତରେ ସୌନ୍ଦର୍ଯ୍ୟ ଦର୍ଶନ, (ଖ) ଏ ଦେଶମାଟିରେ ଆହୃତ ଉପାଦାନର ଅନୁରୂପ ଉପାଦାନ ନିର୍ବାଚନ ଓ (ଗ) ଏହି ଉଭୟ ଉପାଦାନର ସାର୍ଥକ ସମୀକରଣ । ଯେଉଁମାନେ ଆହୃତ ଉପାଦାନ ଭିତରେ ଏ ଦେଶର ସଂସ୍କୃତିକୁ ବିଭ୍ରଷ୍ଟ ହୋଇଥିବାର ଦେଖିବାକୁ ପାଇଲେ ସେମାନେ ରାଧାନାଥ-ସାହିତ୍ୟକୁ ଯଥାର୍ଥ ଅଭିନନ୍ଦନ ଦେବାରେ ଅସମର୍ଥ ହୋଇଥିଲେ । କିନ୍ତୁ ଅନୁରୂପ ବିଷୟ ନିର୍ବାଚନ-ବେଳେ ସାର୍ଥକ ରସବୋଧ, ଓ ଶାଣିତ ବିଚାର ବୁଦ୍ଧି ଯେ ଦରକାର ହୁଏ, ସର୍ବୋପରି ଦୁଇଟି ବିଷୟର ସମୀକରଣ ଯେ ଅପୂର୍ବ ସୃଷ୍ଟି-କ୍ଷମତାର ଅପେକ୍ଷା ରଖେ, ସାହିତ୍ୟିକ ଦୃଷ୍ଟିକୋଣରୁ, ସେମାନେ ଏ ସାହିତ୍ୟର ରସ-ସୌନ୍ଦର୍ଯ୍ୟ ପରିଶୀଳନ କଲେନି । ପ୍ରଥମତଃ ରାଧାନାଥ ସାହିତ୍ୟ ସ୍ରଷ୍ଟା । ବିଦେଶୀ ସାହିତ୍ୟର ଆଦର୍ଶରେ ଗଠିତ ତାଙ୍କ ସାହିତ୍ୟର ଅନ୍ତଃସ୍ୱରଟି ହେଉଛି କରୁଣରସ । ଏ କରୁଣରସ ରାଧାନାଥଙ୍କ ସାହିତ୍ୟ-ରୂପ-ବିଭବର ସର୍ବଶେଷ ଓ ସର୍ବଶ୍ରେଷ୍ଠ ଆତ୍ମିକ ରସସମ୍ପଦ । ଏ ରସସମ୍ପଦ ଯେମିତି ଅଭିନବ, ଅଲୌକ-

ସାମାନ୍ୟ ଓ ଅବିସ୍ମରଣୀୟ । ଏହାର ଯଥାର୍ଥ ପରିଶୀଳନ ପାଇଁ ଯେଉଁ ସାହିତ୍ୟିକ ରୁଚି ଦରକାର ତାହା ସେମିତି ଅପୂର୍ବ, ଅଦ୍ୱିତୀୟ ଓ ଅଶ୍ରୁତପୂର୍ବ । ଏଇ ଅଭିରୁଚି ଯେ ପାଶ୍ଚାତ୍ୟ ସାହିତ୍ୟ, ବିଶେଷତଃ ଗ୍ରୀକ୍ ସାହିତ୍ୟର ଟ୍ରାଜେଡି-ଆଦର୍ଶରେ ଗଢ଼ିଉଠିଛି ଏଥିରେ କୌଣସି ସନ୍ଦେହ ନାହିଁ ।

ପ୍ରକୃତି-ପ୍ରେମୀ ରାଧାନାଥଙ୍କ ପ୍ରକୃତିଚିତ୍ରଣରେ ଅପୂର୍ବ ସୃଷ୍ଟି-ଦକ୍ଷତା ତାଙ୍କର ଅନ୍ୟାନ୍ୟ କାବ୍ୟମାନଙ୍କରେ ଆଂଶିକ ଓ 'ଚିଲିକା' କାବ୍ୟରେ ଚରମ ସୀମାରେ ଉପନୀତ ହୋଇଥିଲା । ଗତାନୁଗତିକ କାବ୍ୟ-ସୃଷ୍ଟି-ନିୟମ ଅର୍ଥାତ୍ କାବ୍ୟରେ ଭିନ୍ନ ଭିନ୍ନ ଚରିତ୍ରର ସମାବେଶ, ବିଭିନ୍ନ ଛନ୍ଦର ସଂଯୋଜନ, ଆରମ୍ଭରେ ଦେବଦେବୀଙ୍କ ସ୍ତୁତି ଅଥବା କଥାବସ୍ତୁର ଉଲ୍ଲେଖ, ନିର୍ଦ୍ଦିଷ୍ଟ ରସପରିପୋଷକ ବାତାବରଣର ସୃଷ୍ଟି ଇତ୍ୟାଦି 'ଚିଲିକା'ରେ ଅନୁସୃତ ହୋଇ ନି; ତଥାପି ଏହା ଗୋଟିଏ ଖଣ୍ଡକାବ୍ୟ । କବିବରଙ୍କ କବିପ୍ରତିଭାଟି କବିତା-ସୌନ୍ଦର୍ଯ୍ୟ ଓ ପ୍ରକୃତିଚିତ୍ରଣ ଭିତରେ ଏକ ଅନବଦ୍ୟ ରୂପସମ୍ଭାରରେ ଫୁଟିଉଠିଛି । ପ୍ରକୃତିର ଅଖଣ୍ଡ ରସ-ସୌନ୍ଦର୍ଯ୍ୟ ଆକଣ୍ଠ ପାନକରି କବି ପ୍ରକୃତିର ଭିନ୍ନ ଭିନ୍ନ ବିଭାଗକୁ କମନୀୟ ଓ ଲୋଭନୀୟ ଭାଷାବିଭବରେ ବିମଣ୍ଡନ କରିଛନ୍ତି । ଯାହା ହେଲେ ଥିଲା ପ୍ରକୃତିର ଜଡ଼, ପ୍ରାଣହୀନ, ଅନ୍ତଃସାରଶୂନ୍ୟ ଉପାଦାନ, ତାହା କବିବରଙ୍କ ଅମର ତୁଳିକାରେ ନୂତନ ଜୀବନ୍ୟାସ ପାଇ ନୂତନ ପ୍ରାଣ ସ୍ପନ୍ଦନରେ ଉଦ୍‌ଜୀବିତ ହୋଇ ଉଠିଛି । 'ଚିଲିକା' କାବ୍ୟର ବହୁ ସ୍ଥଳରେ ଅନ୍ୟ ସାହିତ୍ୟର ଶ୍ଳୋକଗତ ବା ଭାବଗତ ଅନୁସରଣ ଦେଖିବାକୁ ମିଳେ । ତଥାପି ଏହାର ରୂପବିଭବ, ସ୍ୱତନ୍ତ୍ରରସ-ସୌନ୍ଦର୍ଯ୍ୟ ଓ କାବ୍ୟ-ସମଗ୍ରତାର ସୃଷ୍ଟି ପରିକଳ୍ପନା ବାସ୍ତବିକ

ମୌଳିକ, ଅଭିନବ ଓ ଅନନ୍ୟସାଧାରଣ । ଚିଲିକାହ୍ରଦ ହେଉଛି 'ଚିଲିକା' କାବ୍ୟର ନାୟିକା । ଏହାର ବିଭିନ୍ନ କଥାବସ୍ତୁ ଏହାକୁ କେନ୍ଦ୍ରକରି ଗତିମୁଖର । ପ୍ରକୃତିକୁ କାବ୍ୟର ନାୟିକାରୂପେ ଗ୍ରହଣକରି ତାର ଅନବଦ୍ୟ ରୂପ-ବିଭବରେ ଅଖଣ୍ଡ କାବ୍ୟ-ସୌନ୍ଦର୍ଯ୍ୟ ପ୍ରତିଷ୍ଠା କରିବା ଉଚ୍ଚ ସୃଷ୍ଟି ପ୍ରତିଭାର ଅପେକ୍ଷା ରଖେ ।

ରାଧାନାଥଙ୍କ ସମଗ୍ର କବିଜୀବନ ଓ ପ୍ରତିଭାସ୍ପୃରଣର ଅନବଦ୍ୟ ନିଦର୍ଶନ ହେଉଛି "ମହାଯାତ୍ରା" ମହାକାବ୍ୟ । "ମହାଯାତ୍ରା" ମହାଭାରତବର୍ଣ୍ଣିତ ଯୁଧିଷ୍ଠିରଙ୍କ ମହାପ୍ରୟାଣ ବା ମହାଯାତ୍ରାର ଅନୁସରଣରେ ରଚିତ ହୋଇଥିଲେହେଁ ଏହା ମୂଳ ମହାଭାରତର ନକଲି ସଂସ୍କରଣ ନୁହେଁ । ଏ କାବ୍ୟରେ ଭାରତର ଅତୀତ ଇତିହାସ ବର୍ଣ୍ଣିତ ହୋଇଥିଲେହେଁ ଏହା ସାଧାରଣ ଇତିହାସ ନୁହେଁ । ଏ ଦେଶର ପୁରାଣ ଓ ଇତିହାସର ଅସ୍ଥିକଙ୍କାଳ ସହିତ ବିଦେଶୀ-ସାହିତ୍ୟର ଉପାଦାନ ସଂଯୋଗ କରି ରାଧାନାଥ ଯେଉଁ ଜୀବନ୍ତ କାବ୍ୟ-ଶରୀର ଠିଆ କରାଇଛନ୍ତି ତାହା ଯଥାର୍ଥରେ କାବ୍ୟ ମାତ୍ର । ଏ କାବ୍ୟର ଶରୀରଟି ହେଉଛି ପ୍ରାଚ୍ୟ ବା ଭାରତୀୟ କିନ୍ତୁ ଏହାର ଅନ୍ତଃ ସ୍ୱରୂପ, ଅନ୍ତଃସ୍ୱର ବା ଯଥାର୍ଥ ପ୍ରାଣ-ଉତ୍ସ ହେଉଛି ପାଶ୍ଚାତ୍ୟ । ସୃଷ୍ଟିର ଏ ପ୍ରାଣ-ଉତ୍ସ ହେଉଛି ଲାଟିନ କବି ଭର୍ଜିଲଙ୍କ 'ଇନୟୁଡ୍' କାବ୍ୟ, ଦାନ୍ତେଙ୍କ "ଡିଭାଇନ କମେଡି" ଓ ମିଲଟନଙ୍କ "ପାରାଡାଇଜ ଲଷ୍ଟ" କାବ୍ୟ । ବଙ୍ଗୀୟ କବି ମାଇକେଲ ମଧୁସୂଦନ ଦତ୍ତଙ୍କ "ମେଘନାଦ ବଧ" କାବ୍ୟର ଅନୁସରଣରେ "ମହାଯାତ୍ରା" ରଚିତ ହୋଇଛି ବୋଲି କହିଦେଇ ଯଦି ସେଥିରୁ କ୍ଷାନ୍ତ ହୋଇଯାଉଁ ତାହେଲେ ଆମେ ରାଧାନାଥ-ସାହିତ୍ୟର ସୃଷ୍ଟି-ସୌନ୍ଦର୍ଯ୍ୟ ପୂର୍ଣ୍ଣତଃ ଅନୁଭବ କରିବାକୁ ସମର୍ଥ ହେବୁନାହିଁ ।

"ମହାଯାତ୍ରା" ସୃଷ୍ଟିର ପ୍ରଧାନ ଲକ୍ଷ୍ୟ ଇତିହାସ- ମାଧ୍ୟମରେ ଜାତୀୟ ଅଧୋପତନର ଚିତ୍ର ପ୍ରଦର୍ଶନ ତଥା ଏକ ଗମ୍ଭୀର କରୁଣ ରସର ପ୍ରତିଷ୍ଠା କରିବା । ଏ କରୁଣରସ (ଯାହା ଏ ସାହିତ୍ୟରେ ସମ୍ପୂର୍ଣ୍ଣ ନୂତନ) ରାଧାନାଥଙ୍କ ଅନ୍ୟାନ୍ୟ କାବ୍ୟରେ ସଂପୂର୍ଣ୍ଣ ଭାବେ ବ୍ୟକ୍ତି ବା ଚରିତ୍ର-କେନ୍ଦ୍ରିକ । କିନ୍ତୁ 'ମହାଯାତ୍ରା'ର କରୁଣରସ ସମଗ୍ର ଜାତିକୁ କେନ୍ଦ୍ରକରି ଗତିମୁଖର । ଏ କରୁଣରସର ଅଭିନବ ରୂପ ଅଭିବ୍ୟକ୍ତ ଲାଭ କରିଛି ଅମିତ୍ରାକ୍ଷର ଛନ୍ଦର ଅମୀୟ ସ୍ୱର ଝଙ୍କାର ସାହାଯ୍ୟରେ । କବି କଳ୍ପନାର ସୁଦୂର ପ୍ରସାରି ଚିନ୍ତାରାଶି, ଯାଦୁକରୀ ଶବ୍ଦ ଯୋଜନାର ମନମତାଣିଆ ପରିବେଶ, ମନୋମୁଗ୍ଧକର ବର୍ଣ୍ଣନାପାଟୀର ଅମଳିନ ଛବି, ସୃଷ୍ଟି ପରିକଳ୍ପନାରେ ମୌଳିକ ଦୃଷ୍ଟିଭଙ୍ଗୀ, ଅମିତ୍ରାକ୍ଷର ଛନ୍ଦର ସୌନ୍ଦର୍ଯ୍ୟ-ବୈଚିତ୍ର୍ୟ, ସ୍ୱଳତଃ ସାର୍ଥକ କବି ପ୍ରତିଭାର ପରିପୂର୍ଣ୍ଣ ଅଭିବ୍ୟକ୍ତି-ଏ ପ୍ରତ୍ୟେକଟି "ମହାଯାତ୍ରା"ରେ ଯେପରି ଲୋଭନୀୟ ପରିବେଶ ଭିତରେ ଗତି କରିଛନ୍ତି ତାହା ଏ ସାହିତ୍ୟରେ ଏକାନ୍ତ ଦୁର୍ଲ୍ଲଭ ।

ରାଧାନାଥ ସାହିତ୍ୟ ଯେଉଁ ସମାଜ ଓ ପରିବେଶ ଭିତରେ ଫୁଟି ଉଠିଛି ସେ ସମାଜ ଥିଲା ଏକାନ୍ତ ଭାବେ ନିର୍ଜୀବ, ନିଷ୍ପେଷିତ ଓ ଅବହେଳିତ । ୧୮୭୦ ସାଲ ପରେ ଏ ଦେଶ ଲୋକଙ୍କ ପ୍ରାଣରେ ଏକ ଗଭୀରତର ଜାତୀୟତା ଭାବ ଖେଳିଯାଇଥିଲା । ଦେଶ ତଥା ଜାତି ଓ ବ୍ୟକ୍ତିକୁ ପରାଧୀନତା-ନାଗପାଶରୁ ବନ୍ଧନ ବିମୁକ୍ତ କରି ତାଙ୍କୁ ସ୍ୱାଧୀନ ପରିବେଶରେ ଉପସ୍ଥାପନ କରାଇବା ଥିଲା ତତ୍କାଳୀନ ଜାଗ୍ରତ ସମାଜର ଏକ ପ୍ରଧାନ ଲକ୍ଷ୍ୟ । ଲୋକ ନୀତିର ଏ ଜୀବନ୍ତ ଛବି ରାଧାନାଥ କାବ୍ୟ ରାଶିରେ ଏକ ଅଭିନବ

ରୂପରେ ଆତ୍ମ ପ୍ରକାଶ କରିଛନ୍ତି । ରାଧାନାଥ ସାହିତ୍ୟ ଏ ଦେଶ ମାଟିରେ ସମ୍ପୂର୍ଣ୍ଣ ନୂତନ ଥିବାରୁ ଏ ସାହିତ୍ୟର ରସ-ସୌନ୍ଦର୍ଯ୍ୟ ଅନୁଶୀଳନ ପାଇଁ ଏକ ସ୍ୱତନ୍ତ୍ର ନୂତନ ମନୋବୃତ୍ତି ଦରକାର । ଏ ସାହିତ୍ୟର ସଙ୍ଗୀତ ମାଧୁରୀ ଅନୁଭବ କରିବାପାଇଁ ଭିନ୍ନ କାନ ଦରକାର । ସେ ସାହିତ୍ୟର ରୂପ ବିଭବ ପରିଦର୍ଶନ ପାଇଁ ସ୍ୱତନ୍ତ୍ର ଚକ୍ଷୁ ଦରକାର । ଯାହାର ସେ ଅଭିରୁଚି, ସେ କର୍ଣ୍ଣ, ସେ ଚକ୍ଷୁ ନାହିଁ ତା ପକ୍ଷରେ ରାଧାନାଥ-ସାହିତ୍ୟ ବାସ୍ତବରେ ଗ୍ରୀକ୍ ଲାଟିନ ସଙ୍ଗେ ସମାନ ।

## ଭକ୍ତକବି ମଧୁସୂଦନ ରାଓ (୧୮୫୩-୧୯୧୨)

ମଧୁସୂଦନ କଟକରେ ଏଫ୍. ଏ. (୧୮୬୯-୭୧) ଅଧ୍ୟୟନ କରୁଥିବା ବେଳେ ତଦାନୀନ୍ତନ ଦର୍ଶନ ଅଧ୍ୟାପକ ଶ୍ରୀ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରଭାବରେ ଆସି ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସହ ବ୍ରାହ୍ମ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏହି ଧର୍ମାନ୍ତର ଗ୍ରହଣହିଁ ତାଙ୍କର ବ୍ୟକ୍ତିଗତ ଜୀବନ ଓ ସାହିତ୍ୟ ସାଧନାକୁ ପରବର୍ତ୍ତୀ କାଳରେ ବହୁ ପରିମାଣରେ ନିୟନ୍ତ୍ରଣ କରିଥିଲା । ସ୍ଥୂଳତଃ, ବ୍ରାହ୍ମଧର୍ମ, ମଧୁସୂଦନଙ୍କ ବ୍ୟକ୍ତିଗତ ଜୀବନ ଓ ତାଙ୍କ ରଚନାବଳୀ, ଏ ତିନୋଟି ପରସ୍ପର ଘନିଷ୍ଠ ଭାବେ ସମ୍ପୃକ୍ତ ଓ ତାଙ୍କ ରଚନାବଳୀ ପୂର୍ବୋକ୍ତ ପ୍ରଥମ ଦୁଇଟିର ସାର୍ଥକ ପରିଣତି ମାତ୍ର । ଓଡ଼ିଶାର ଶିକ୍ଷା ବିଭାଗରେ ସାରାଜୀବନ ଅତିବାହିତ କରିଥିବାରୁ ସେ ଓଡ଼ିଆ ପାଠ୍ୟପୁସ୍ତକର ଦାରୁଣ ଅଭାବ ଅନୁଭବ କରିଥିଲେ । ଏ ଅଭାବ ଦୂରୀକରଣାର୍ଥେ ସେ କେତେକ ପାଠ୍ୟ ପୁସ୍ତକ ରଚନାରେ ମନ ବଳାଇଥିଲେ । ତେଣୁ ତାଙ୍କ ଲେଖାରେ ଆମେ କେତେକ ସ୍ଥଳରେ ସାହିତ୍ୟ-ସ୍ରଷ୍ଟା ମଧୁସୂଦନଙ୍କ ଅପେକ୍ଷା ଶିକ୍ଷକ ମଧୁସୂଦନଙ୍କୁ

ଦେଖିବାକୁ ପାଉଁ । ପାଠ୍ୟ ପୁସ୍ତକ ଭିତରେ ତାଙ୍କର "ବର୍ଣ୍ଣବୋଧ" ଏକ ବିସ୍ମୟକର ସୃଷ୍ଟି । ଗତ ୭୫ ବର୍ଷ ଧରି ଏ ଦେଶର ଲେଖାପଢ଼ା ଶିଖିଥିବା ଆବାଳ ବୃଦ୍ଧବନିତା ଏଇ "ବର୍ଣ୍ଣବୋଧ"ର ସ୍ତୁତି ସ୍ତୁତି କହିଲେ ଅତ୍ୟୁକ୍ତି ହେବନାହିଁ । ପାଠ୍ୟପୁସ୍ତକମାନଙ୍କରେ ମଧ୍ୟ ତାଙ୍କର ଗଭୀର ଭକ୍ତିଭାବ ବା ଈଶ୍ୱର ବିଶ୍ୱାସ ଓ ଜାତୀୟତା ବୋଧ ସୁସ୍ପଷ୍ଟ ଭାବେ ପରିଲକ୍ଷିତ ହୁଏ । ଯେଉଁ କେତୋଟି ଦାର୍ଶନିକ ଉଚ୍ଚ ଚିନ୍ତାପୂର୍ଣ୍ଣ କବିତା ତାଙ୍କ ଜୀବନର ଦୃଷ୍ଟିଭଙ୍ଗୀ ତଥା ଅନ୍ତର୍ଦୃଷ୍ଟିର ପରିଚୟ ଦିଅନ୍ତି ସେ ସବୁ ଓଡ଼ିଆ ସାହିତ୍ୟରେ ଯଥାର୍ଥ ସମ୍ପଦ ରୂପେ ଆଜି ସାଧାରଣଙ୍କ ଦ୍ୱାରା ଗୃହୀତ ହୋଇଛନ୍ତି ।

କେତୋଟି ଇଂରାଜୀ କବିତା ଓ ସଂସ୍କୃତ (ବାଲ ରାମାୟଣ ଓ ଉତ୍ତର ରାମ ଚରିତ) ଅନୁବାଦରେ ମଧୁସୂଦନ ହାତ ଦେଇଥିଲେହେଁ ଓଡ଼ିଆ ଗଦ୍ୟ ଓ ଗୀତିକବିତା-ରାଜ୍ୟରେ ସେ ଅକ୍ଷୟ ସୁନାମ ଅର୍ଜ୍ଜନ କରିଛନ୍ତି । ବଙ୍ଗ ଭାଷା ମିଶ୍ରିତ ଓଡ଼ିଆ ଗଦ୍ୟ ଏକ ସୁରୁଚି ସମ୍ପନ୍ନ ଓ ମାର୍ଜିତ ରୂପରେ ପ୍ରଥମେ ତାଙ୍କରି ହାତରେ ଦେଖା ଦେଇଥିଲା । ସେ ସଂସ୍କୃତ ବହୁଳ ଗଦ୍ୟ ସାହିତ୍ୟର ଜନ୍ମଦାତା ଓ ପ୍ରତିଷ୍ଠାତା ଏବଂ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ପ୍ରଥମ ପ୍ରବର୍ତ୍ତକ । ଓଡ଼ିଆ କଥା ସାହିତ୍ୟରେ ସୃଷ୍ଟିର ଯଥାର୍ଥ ପରିଚୟ ଦେଇ ନଥିଲେହେଁ ମଧୁସୂଦନ ଯେ ଏହାର ପ୍ରଥମ ପ୍ରବର୍ତ୍ତକ ତାହା ଅସ୍ୱୀକାର କରି ହେବନାହିଁ । ନାଟକ (ଅନୁବାଦ), ପ୍ରବନ୍ଧ, ବକ୍ତୃତା, ଗଳ୍ପରେ ହାତ ଦେଇଥିଲେହେଁ ସେ କେବଳ ଗୀତି-କବିତାରେ ଅମର ଯଶ ଅର୍ଜ୍ଜନ କରି ଯାଇଛନ୍ତି । ଏଇ ଗୀତି-କବିତାଗୁଡ଼ିକ ତାଙ୍କ

ଜୀବନ ସମ୍ବନ୍ଧ ସମାନ୍ତରାଳ ଭାବେ ଏକ ଧାର୍ମିକ ଅଭିବୃଦ୍ଧି ମଧ୍ୟରେ ମଧ୍ୟ ଗତି ମୁଖର ।

ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କ ଦ୍ୱାରା ପ୍ରତିଷ୍ଠିତ "ସାଧାରଣ ବ୍ରାହ୍ମ ସମାଜର"ର ଅନ୍ତର୍ଭୁକ୍ତ ଥିଲେ ମଧୁସୂଦନ । ତଥାପି କେଶବଚନ୍ଦ୍ର ସେନଙ୍କ "ନବବିଧାନ"ଠାରେ ନିଜ ଧର୍ମମତ ଓ କାବ୍ୟ-ପ୍ରତିଷ୍ଠା ପାଇଁ ସେ ବହୁ ପରିମାଣରେ ଋଣୀ । ସେଇ ହେତୁରୁ ମଧୁସୂଦନଙ୍କ ଚରିତ୍ରରେ ତଥା ତାଙ୍କ କବିତାରେ ଏଇ ଉଭୟ ସଂସ୍ଥାର ପ୍ରଭାବ ଦେଖିବାକୁ ମିଳେ । ଏକ ପକ୍ଷରେ କେଶବ ପ୍ରବର୍ତ୍ତିତ ସର୍ବଧର୍ମ ସମନ୍ୱୟର ଉଦାର ମନୋଭାବ ଓ ଅପର ପକ୍ଷରେ ପ୍ରାଚୀନ ଭାରତୀୟ ଧର୍ମସଂସ୍ଥା ପ୍ରତି ଅଖଣ୍ଡ ମମତା ପ୍ରକାଶ କରୁଥିବା "ସାଧାରଣ ବ୍ରାହ୍ମ ସମାଜ"ର ଧର୍ମ ବିଶ୍ୱାସ, ଏ ଉଭୟ ତାଙ୍କ ରଚନାରେ ଆତ୍ମ ପ୍ରକାଶ କରିଛନ୍ତି ।

ମଧୁସୂଦନଙ୍କ "ଜୀବନଚିନ୍ତା" (୧୮୭୮) କବିତାରେ ଜୀବନର ଯେଉଁ ସାର୍ଥକ ଅନୁଚିନ୍ତା ସ୍ଥାନ ପାଇଛି ସେଥିରେ ଭାରତୀୟ ଧର୍ମ-ଦର୍ଶନର ଆତ୍ମା-ପରମାତ୍ମା-ମିଳନ ଏକ ମହିମାମୟ ରୂପ ସମ୍ଭାରରେ ପ୍ରତିଷ୍ଠିତ ହୋଇଛି । ପରମାତ୍ମା ସହ ମିଳିତ ହେବା ଜୀବାତ୍ମାର ସର୍ବଶ୍ରେଷ୍ଠ କାମନା—କବିତାରେ ପ୍ରଖ୍ୟାପିତ ଏଇ ମର୍ମବାଣୀ ତାଙ୍କର ପରବର୍ତ୍ତୀ ରଚନାମାନଙ୍କରେ ଆହୁରି ବିଶଦ ଭାବେ ଚର୍ଚ୍ଚିତ ହୋଇଛି । ଯଥାର୍ଥତଃ, ୧୮୮୦ ସାଲ ପର୍ଯ୍ୟନ୍ତ ସେ ଧର୍ମ ବିଷୟରେ କେବଳ ଚିନ୍ତା କରିଛନ୍ତି କିନ୍ତୁ ତାକୁ ସାହିତ୍ୟିକ ରୂପରେ ସେ ଫୁଟାଇଛନ୍ତି ପରବର୍ତ୍ତୀ ସମୟରେ । ୧୮୭୦-୮୦ ସାଲ ଯଦି, କବିତା ସୃଷ୍ଟି ଦିଗରୁ, ପ୍ରସ୍ତୁତିର ଯୁଗ ହୁଏ, ତା ହେଲେ ୧୮୮୧-୯୦ ସାଲ ହେଉଛି ପ୍ରତିଷ୍ଠାର ଯୁଗ ।

"ଆକାଶ ପ୍ରତି" (୧୮୮୪), "ଆଶା" (୧୮୮୮) ପ୍ରଭୃତି କବିତାରେ ଦାର୍ଶନିକ ଦୃଷ୍ଟିଭଙ୍ଗୀର ଯେଉଁ ସାର୍ଥକ ଉନ୍ମେଷ ଦେଖିବାକୁ ମିଳେ ତାହା ୧୮୯୧-୯୫ ସାଲ ଭିତରେ ପରିପୂର୍ଣ୍ଣ ଅବସ୍ଥାକୁ ଗୃଳି ଆସିଥିଲା । "ଋଷିପ୍ରାଣେ ଦେବାବତରଣ" (୧୮୯୨) କବିତାରେ ସ୍ରଷ୍ଟା-ସାଧକର ଯେଉଁ ଅମୀୟ ଦିବ୍ୟଦୃଷ୍ଟି କେବଳ ଋଷି ପ୍ରାଣରେ ଦେବତାର ଅବତରଣ ସନ୍ଦର୍ଶନ କରିଥିଲା ସେହି ଦିବ୍ୟ ଦୃଷ୍ଟି "ହିମାଚଳେ ଉଦୟ ଉତ୍ସବ" (୧୯୧୧) କବିତାରେ ଭକ୍ତକବିଙ୍କ ନିଜ ହୃଦ-କନ୍ଦରରେ ଚିନ୍ମୟୀ ଭଗବତ୍ ଶକ୍ତିର ଅବିସ୍ମରଣୀୟ ଆବିର୍ଭାବ ଅନୁଭବ କରିଥିଲା ।

"ଜୀବନଚିନ୍ତା", "ଆକାଶପ୍ରତି", "ଋଷିପ୍ରାଣେ ଦେବାବତରଣ" ଓ "ହିମାଚଳେ ଉଦୟ ଉତ୍ସବ"—ଏ ଗୃରୋଟି କବିତାର ଭାଷା, ଭାବ, ପ୍ରକାଶ ଭଙ୍ଗୀ ଓ ଦାର୍ଶନିକ ଦୃଷ୍ଟିକୋଣ ଅନୁଧ୍ୟାନ କଲେ ଆମେ ମଧୁସୂଦନଙ୍କ ଧର୍ମ ମତବାଦ ଓ ତାକୁ ପ୍ରକାଶ କରିବାର ସାହିତ୍ୟିକ ରୂପ-ସୌନ୍ଦର୍ଯ୍ୟ ଏକ କ୍ରମିକ ଅଭିବୃଦ୍ଧି ଦିଗରେ ଗତି କରିଥିବାର ଦେଖିବାକୁ ପାଉଁ । ରାଧାନାଥ ଯେପରି ପ୍ରାଚ୍ୟ-ପାଶ୍ଚାତ୍ୟ ଶିକ୍ଷା-ସଙ୍ଘର୍ଷର ଅମୃତମୟ ଫଳ, ମଧୁସୂଦନ ସେହିପରି ଊନବିଂଶ ଶତାବ୍ଦୀରେ ପ୍ରବର୍ତ୍ତିତ ବ୍ରାହ୍ମ-ଧର୍ମ-ବିକାଶର ପରିଣତି ମାତ୍ର । ଊନବିଂଶ ଶତାବ୍ଦୀରେ ପ୍ରାଚ୍ୟ-ପାଶ୍ଚାତ୍ୟ ଶିକ୍ଷା-ସଭ୍ୟତା-ଧର୍ମର ଯେଉଁ ସମିଶ୍ରଣ ଘଟିଥିଲା ସେହି ସମନ୍ୱୟର ଆଦ୍ୟଫଳ ହେଉଛନ୍ତି ରାଧାନାଥ ସାହିତ୍ୟ କ୍ଷେତ୍ରରେ ଓ ମଧୁସୂଦନ, ଧର୍ମ-ଜଗତରେ । ବ୍ରାହ୍ମଧର୍ମ-ଆନ୍ଦୋଳନ ଆମର ସାମାଜିକ ଓ ବ୍ୟକ୍ତିଗତ ଜୀବନ ଉପରେ ଯେଉଁ ପ୍ରଳୟଙ୍କରୀ ପ୍ରତିକ୍ରିୟା ସୃଷ୍ଟି କରିଥିଲା ତାହାର ବହୁ ଆଭାସ ମଧୁସୂଦନଙ୍କ

ରଚନାରେ ଦେଖିବାକୁ ମିଳେ । ଆନନ୍ଦରୁ ଏ ଜଗତର ସୃଷ୍ଟି, ଆନନ୍ଦରେ ଏହାର ପରିବୃଦ୍ଧି ଓ ଆନନ୍ଦରେ ତାହାର ପରିସମାପ୍ତି—ଋଷିକଣ୍ଠର ଏ ଉଦାର ଅମୃତବାଣୀ ଥିଲା ବ୍ରହ୍ମଜ୍ଞ ମଧୁସୂଦନଙ୍କ ଜୀବନାଦର୍ଶ । ଏକ ସର୍ବଶକ୍ତିମାନ ଚିନ୍ତାତୀତ ବିରାଟ ପୁରୁଷର ସାର୍ବିକ ଅନନ୍ତ ଶକ୍ତିକୁ ଜଗତରେ ସତ୍ୟରୂପେ ସ୍ୱୀକାର କରି ତାଙ୍କରି ମଙ୍ଗଳମୟ ଆଶୀର୍ବାଦ ଭିକ୍ଷା କରିବା ଜୀବ-ଜୀବନର ଏକମାତ୍ର ଲକ୍ଷ୍ୟ —ଏହାହିଁ ଥିଲା ଭକ୍ତକବି ମଧୁସୂଦନଙ୍କ ଜୀବନର ଚରମ ଓ ପରମ ଅଭିଳାଷ । ଏ ଅଭିଳାଷ ଅତି ବଳିଷ୍ଠଭାବେ ସାହିତ୍ୟିକ ରୂପବିଭବରେ ତାଙ୍କର ବହୁ ସୁନ୍ଦର ସୁନ୍ଦର କବିତାରେ ଆତ୍ମ-ପ୍ରତିଷ୍ଠା କରିଛି । ମଧୁସୂଦନଙ୍କର ଥିଲା ଋଷିର ଚକ୍ଷୁ; ଏହି ଋଷି-ଚକ୍ଷୁ ନେଇ ସେ ଯେଉଁ ଅମୃତାଲୋକର ସନ୍ଧାନରେ ବ୍ରତୀ ଥିଲେ ତାହା ତାଙ୍କର ଜୀବନ ତଥା ଓଡ଼ିଆ ସାହିତ୍ୟକୁ ନବଜୀବନରେ ଉଦ୍‌ଜୀବିତ କରି ତୋଳିଛି ।

ରାଧାନାଥ ଥିଲେ ସୃଷ୍ଟି-ଆଦର୍ଶ ଓ କାବ୍ୟିକ ଭାଷାର ସଂସ୍ଥାପକ । ସହଜ, ସରଳ, ନିରାଡ଼ମ୍ବର ଭାଷାର ମନୋହର ପରିପାଟୀ, ଉନ୍ନତ ଭାବ ପ୍ରକାଶ ବେଳେ କଷ୍ଟକଳ୍ପନା-ପରିହାର, ବର୍ଣ୍ଣନାରେ ସ୍ୱାଭାବିକତାର ଅନୁସରଣ, କଠିନ ଅଳଙ୍କାର ଓ ଛନ୍ଦ-ଯୋଜନାର ପରିହାର ପ୍ରଭୃତି ରାଧାନାଥ-ସାହିତ୍ୟର ଏହି ଆଙ୍ଗିକ ବୈଶିଷ୍ଟ୍ୟ ପରବର୍ତ୍ତୀ ସମୟରେ ପ୍ରାୟ ପ୍ରତ୍ୟେକ ଲେଖକ ଅନୁସରଣ କରି-ଥିଲେ । ମଧୁସୂଦନ ଥିଲେ ମାର୍ଜିତରୁଚି ଓ ଦାର୍ଶନିକ ଚିନ୍ତାର ଆଦିପ୍ରବର୍ତ୍ତକ । ରୁଚିର ଏହି ମାର୍ଜିତ ରୂପଟି ତାଙ୍କର ପରବର୍ତ୍ତୀ ଲେଖକମାନଙ୍କୁ ବହୁ ପରିମାଣରେ ପ୍ରଭାବିତ କରିଥିଲା । ଭାବଗ୍ରାହୀ ଦାସ, ଚତୁର୍ଭୁଜ ପଟ୍ଟନାୟକ, ସାଧୁଚରଣ ରାୟ, ରେବା ରାୟ

ପ୍ରଭୃତି ବ୍ରାହ୍ମଧର୍ମାବଲମ୍ବୀ ଲେଖକ ଲେଖିକାମାନେ ଗୀତିକବିତା ରଚନା କଲାବେଳେ ମଧୁସୂଦନଙ୍କ ଧର୍ମମତବାଦ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ ।

**ଔପନ୍ୟାସିକ ଓ ନାଟ୍ୟକାର ରାମଶଙ୍କର:**—ପ୍ରକୃତ ସାହିତ୍ୟାନୁଶୀଳନ ଦୃଷ୍ଟିକୋଣରୁ ବିଚାର କଲେ ରାଧାନାଥ ଓ ମଧୁସୂଦନଙ୍କ ବ୍ୟତୀତ ଊନବିଂଶ ଶତାବ୍ଦୀରେ ଅନ୍ୟ ଏକ ସାହିତ୍ୟ-ରଥୀ ରାମଶଙ୍କର ରାୟଙ୍କ ନାମ ଉଲ୍ଲେଖ କରାଯାଇପାରେ । ପ୍ରାଥମିକ ଜୀବନରେ କବିତା (ପ୍ରେମତରଙ୍ଗ)ରେ ହସ୍ତ ଦେଇଥିଲେହେଁ ଉପନ୍ୟାସ ବିଶେଷତଃ ନାଟକ ଲେଖକ ହିସାବରେ ସେ ଏ ସାହିତ୍ୟରେ ବିପୁଳ ଯଶର ଅଧିକାରୀ ହୋଇପାରିଛନ୍ତି । ଓଡ଼ିଆ ସାହିତ୍ୟର ପ୍ରଥମ ଔପନ୍ୟାସିକ ରାମଶଙ୍କରଙ୍କ "ବିବାସିନୀ" ଉପନ୍ୟାସ ପୂର୍ବରୁ ଉମେଶଚନ୍ଦ୍ର ସରକାରଙ୍କ "ପଦ୍ମମାଳି" ନାମକ ଏକ ଐତିହାସିକ ଉପନ୍ୟାସ ରଚିତ ହୋଇଥିଲା । ଏଥିରେ କିନ୍ତୁ ସ୍ରଷ୍ଟାର ବିଶେଷ କୌଣସି ସଫଳତା ପରିଦୃଷ୍ଟ ହୁଏନାହିଁ । ମରହଟ୍ଟାରାଜତ୍ୱର ଅପଶାସନ ଓ ଅରାଜକତାକୁ ଅବଲମ୍ବନ କରି "ବିବାସିନୀ" ରଚିତ ହୋଇଛି । ଏଥିରେ ଉପନ୍ୟାସର ଆଙ୍ଗିକ ଶୈଳୀ କେତେକ ପରିମାଣରେ ପ୍ରତିଷ୍ଠିତ ହୋଇଥିବାରୁ ଏହା ବିଶେଷ ସଫଳତା ଲାଭ କରିଛି । କିନ୍ତୁ ପରବର୍ତ୍ତୀ କାଳରେ ଫକୀର ମୋହନଙ୍କ ଉପନ୍ୟାସର ଅଭ୍ୟୁଦୟ ସଙ୍ଗେ ଏହାର ଲୋକପ୍ରିୟତା ଅନେକ ପରିମାଣରେ କମିଯାଇଛି ।

୧୮୭୧ ସାଲରୁ ଯେଉଁ ଜାତୀୟତାବୋଧ ଏ ଦେଶଲୋକ-ଚିତ୍ତରେ ଏକ ଅଭୂତପୂର୍ବ ଉନ୍ମାଦନା ସୃଷ୍ଟିକରିଥିଲା ତାର ସାର୍ଥକ ସାହିତ୍ୟକ ପ୍ରକାଶ ହୋଇଛି ରାମଶଙ୍କରଙ୍କ "କାଞ୍ଚୀକାବେରୀ"

(୧୮୮୧) ନାଟକ । ନାଟ୍ୟସାହିତ୍ୟର କଠିନ ନିୟମାବଳୀକୁ ଆଶ୍ରୟ କରି ରଚିତ 'ଏଇ ନାଟକଟି ତଦାନୀନ୍ତନ ଲୋକ ମନରେ ଏକ ଅଚିନ୍ତନୀୟ ଉନ୍ମାଦନା ସୃଷ୍ଟିକରିଥିଲା । ଆଜି କିନ୍ତୁ ନାଟକ-ସାହିତ୍ୟର ଅଭିବୃଦ୍ଧି ହେତୁ, ଏ ନାଟକର ମଞ୍ଚମୂଲ୍ୟ ତଥା ସାହିତ୍ୟିକ ମୂଲ୍ୟ ବହୁଅଂଶରେ ହ୍ରାସ ପାଇଛି । ରାମଶଙ୍କରଙ୍କ ଅନ୍ୟାନ୍ୟ ନାଟକ ଓ ପ୍ରହସନ ମଧ୍ୟ ଏହି ଦଶା ପାଇଛନ୍ତି । ତଥାପି ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ନୂତନ ସାହିତ୍ୟର ନୂତନରସ ଗ୍ରହଣ ପାଇଁ ଯେଉଁ ନୂତନ ଦୃଷ୍ଟିଭଙ୍ଗୀ ଓ ଅଭିରୁଚି ଏକାନ୍ତ ଆବଶ୍ୟକ ସେ ଅଭିରୁଚି ବହୁପରିମାଣରେ ଏହି ନାଟକମାନଙ୍କ ପ୍ରଦର୍ଶନ ଦ୍ୱାରା ସମ୍ଭବପର ହୋଇଥିଲା । ତେଣୁ ସାହିତ୍ୟର ଇତିହାସ ପର୍ଯ୍ୟାଲୋଚନା ବେଳେ ରାମଶଙ୍କରଙ୍କ ନାଟକାବଳୀର ଐତିହାସିକ ମୂଲ୍ୟ ସର୍ବାଦୌ ସ୍ୱୀକୃତ ହୋଇପାରେ । ସେ ୧୦ଟି ନାଟକ ଓ ୪ଟି ଯାତ୍ରା-ପ୍ରହସନ ରଚନା କରିଥିଲେ । ଏଥିରୁ କେତେକ ରଚନାରେ ସମସାମୟିକ ସମାଜର ଦୋଷ ଦୁର୍ବଳତା ଅତି ନଗ୍ନ ରୂପରେ ଉପସ୍ଥାପିତ ହୋଇଛି । ରାମ, କୃଷ୍ଣ ଓ ଚୈତନ୍ୟଙ୍କ ଆଶ୍ରୟରେ କେତୋଟି ଧର୍ମମୂଳକ ନାଟକ ସେ ରଚନା କରିଛନ୍ତି । ରାମଶଙ୍କର ଉପନ୍ୟାସ ଓ ନାଟକ ରଚନାର ଯେଉଁ ପରମ୍ପରା ତିଆରି କରିଗଲେ ତାଙ୍କର ଉପଯୁକ୍ତ ଉତ୍ତରାଧିକାରୀ ହିସାବରେ ଯଥାକ୍ରମେ ଫକୀରମୋହନ ( ଉପନ୍ୟାସରେ ) ଓ କାମପାଳ, ଗୋଦାବରୀଶ ( ନାଟକରେ ) ପରବର୍ତ୍ତୀ ସମୟରେ ସେଇ ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖିବାକୁ ଚେଷ୍ଟାକଲେ ।

**ଆଧୁନିକ ଓଡ଼ିଆସାହିତ୍ୟ ବିକାଶର ଦ୍ୱିତୀୟ-ପର୍ଯ୍ୟାୟ ( ୧୮୯୭-୧୯୨୦ ) :**—ନିଷ୍ପେଷିତ, ଅବହେଳିତ ଓ ଲାଞ୍ଛିତ ଓଡ଼ିଆଜାତିର ପ୍ରାଣକେନ୍ଦ୍ର ଦୀର୍ଘ ଏକଶତବର୍ଷ

(୧୮୦୩-୧୯୦୩) ବ୍ୟାପୀ କକ୍ଷଚ୍ୟୁତ, ଦିଗ୍‌ଭ୍ରାନ୍ତ ଓ ଆତ୍ମଚୈତନ୍ୟଶୂନ୍ୟ ହୋଇ ପଡ଼ିରହିଥିଲା । ଜାତିପ୍ରାଣର ରୁଦ୍ଧ ଓ ଦମିତ ଅଭୀପ୍‌ସା ଓ ଅଭିଳାଷ ପ୍ରଥମଥର ପାଇଁ ୧୯୦୩ ସାଲରେ ଜାତିର ଯଥାର୍ଥ ନାୟକ ମିଷ୍ଟର ମଧୁସୂଦନ ଦାସଙ୍କ ନେତୃତ୍ୱରେ ସଂଗଠିତ ହେବାର ପରମ ସୌଭାଗ୍ୟ ଲାଭ କରିଥିଲା । ଜାତୀୟ ଆଶା-ଆକାଂକ୍ଷାର ମୂର୍ତ୍ତି ପ୍ରତୀକ "ଉତ୍କଳ ସମ୍ମିଳନୀ" ଓ "ଉତ୍କଳ-ସାହିତ୍ୟ ସମାଜ" ଏକ ସମୟରେ ନୂତନ ରୂପରେ ପ୍ରତିଷ୍ଠିତ ହୋଇ ଏ ଦେଶରେ ଯେଉଁ ଉନ୍ମାଦନା, ସାହିତ୍ୟ ସୃଷ୍ଟିପାଇଁ ଯେଉଁ ନବପ୍ରେରଣାର ସ୍ରୋତ ବୁହାଇ ଦେଲେ ତାହା ଓଡ଼ିଶା ଇତିହାସରେ ସମ୍ପୂର୍ଣ୍ଣ ନୂତନ ଓ ଅଶ୍ରୁତପୂର୍ବ । ଊନବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶକରେ ଆଧୁନିକ ଓଡ଼ିଆ ସାହିତ୍ୟ ଏହି ଦୁଇ ଅନୁଷ୍ଠାନ ଦ୍ୱାରା ବହୁପରିମାଣରେ ପ୍ରଭାବିତ ହୋଇଥିଲା ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ଆଧୁନିକ ସାହିତ୍ୟର ଗତି ଅବରୁଦ୍ଧ ହୋଇ ଯାଇଥିଲା । ଇନ୍ଦ୍ରଧନୁ-ବିଜୁଳି (୧୮୯୩-୯୪) ନାମକ ଦୁଇଟି ସାମୟିକପତ୍ରିକା ଯଥାକ୍ରମେ ପୁରାତନ ଓ ଆଧୁନିକ ସାହିତ୍ୟର ଜୟଧ୍ୱଜା ଉଡ଼ାଇ ଏକ ତିକ୍ତ ବାୟୁମଣ୍ଡଳ ସୃଷ୍ଟି କରି ଦେଇଥିଲେ । ସେଥିରେ କିନ୍ତୁ ରାଧାନାଥ-ସାହିତ୍ୟର ଅଶେଷ ଅକଲ୍ୟାଣ ସାଧିତ ହୋଇଥିଲା । ସେହି ସମୟଠାରୁ ରାଧାନାଥ-ପ୍ରତିଭାର ଯେ ଅବସାନ ଘଟିଥିଲା ତାହା ନୁହେଁ ତାଙ୍କ ପକ୍ଷୀୟ ଲେଖକମାନେ ମଧ୍ୟ ତାଙ୍କ ସାହିତ୍ୟର ଲଳିତକଳା-ସୌନ୍ଦର୍ଯ୍ୟ ନିରୀକ୍ଷଣ ନ କରି ତାର ବହିରଙ୍ଗ ସ୍ୱରୂପ ଉପରେ ଘୋର ସନ୍ଦେହ କରିବାକୁ ଲାଗିଲେ । ଫଳରେ ଏହିମାନଙ୍କ ଦ୍ୱାରା ଆଧୁନିକ

ସାହିତ୍ୟର ଅନ୍ୟ ଏକ ସ୍ୱତନ୍ତ୍ର ଧାରା ସୃଷ୍ଟି ହୋଇଗଲା । ରାଧାନାଥ-ପରମ୍ପରାର ଶ୍ରେଷ୍ଠ ପ୍ରତୀକ ଯେଉଁ କାବ୍ୟ ତାହା ଏହି ସମୟଠାରୁ ଅନାଦୃତ ହେଲା ଓ ତା ସ୍ଥାନରେ କ୍ଷୁଦ୍ରଗଳ୍ପ, ଉପନ୍ୟାସ, ଗୀତିକବିତା, ନାଟକ, ପ୍ରବନ୍ଧ, ସମାଲୋଚନା ପ୍ରଭୃତି ସାହିତ୍ୟର ଅନ୍ୟ ବିଭାଗମାନ ବିକାଶ ଲାଭକଲା । ବିଶ୍ୱନାଥ କରଙ୍କ ପରି ଜଣେ ପ୍ରତିଷ୍ଠିତ ସାହିତ୍ୟିକ "ଉତ୍କଳ ସାହିତ୍ୟ"(୧୮୯୭ ସାଲ ଜାନୁୟାରୀ) ପତ୍ରିକା ସମ୍ପାଦନା କରି ସାହିତ୍ୟର ଏହି ନବଧାରାକୁ ଆହୁରି ଗତିମୁଖର କରାଇଦେଲେ । "ଉତ୍କଳସାହିତ୍ୟ" ହିଁ ଏହି ନବସାହିତ୍ୟର ଯଥାର୍ଥ ପାଳନକର୍ତ୍ତା । "ଉତ୍କଳସାହିତ୍ୟ" ଆବିର୍ଭାବ ପୂର୍ବରୁ "ସମ୍ବଲପୁରହିତୈଷିଣୀ"(୧୮୮୯) ଏହି ନୂତନ ସାହିତ୍ୟିକ ଗୋଷ୍ଠୀ ତିଆରି କରିବାରେ ପ୍ରଥମେ ନେତୃତ୍ୱ ନେଇଥିଲା । ଏହି ନବସାହିତ୍ୟର ସେନାପତିତ୍ୱ କରିଥିଲେ ବ୍ୟାସକବି ଫକୀର-ମୋହନ ସେନାପତି ।

**ବ୍ୟାସକବି ଫକୀର ମୋହନ ସେନାପତି(୧୮୪୮-୧୯୧୮) :—** ଫକୀର ମୋହନ ତରୁଣଜୀବନରେ (୧୮୬୯) ଓଡ଼ିଆ ଭାଷା ରକ୍ଷା ପାଇଁ ଯେମିତି ବୀରପରି ଲଢ଼ି ପାରିଥିଲେ ଏ ସାହିତ୍ୟର ପ୍ରାଣପ୍ରତିଷ୍ଠା ପାଇଁ ପରବର୍ତ୍ତୀ ସମୟରେ ସେମିତି ଜୀବନ ମଧ୍ୟ ଉତ୍ସର୍ଗ କରି ଦେଇଥିଲେ । ୧୮୭୧-୯୭ସାଲ ଭିତରେ ତାଙ୍କୁ ଓଡ଼ିଶାର ବିଭିନ୍ନ ଦେଶୀୟ ରାଜ୍ୟମାନଙ୍କରେ ଶାସକ ଜୀବନ କଟାଇବାକୁ ପଡ଼ିଥିବାରୁ ସେ ସାହିତ୍ୟ-ସେବାକୁ ଅବ୍ୟାହତ କରି ରଖିପାରିନଥିଲେ । ପ୍ରାଥମିକ ଜୀବନର ପାଠ୍ୟପୁସ୍ତକ ଓ ମଧ୍ୟବର୍ତ୍ତୀ ଜୀବନର ଅନୁବାଦ ସାହିତ୍ୟ ସେବାର ଉତ୍କୃଷ୍ଟତା ଶ୍ରେଷ୍ଠ ନିଦର୍ଶନ ନୁହନ୍ତି । ପତ୍ନୀ ବିୟୋଗ ହେତୁ ମାନସିକ ଯନ୍ତ୍ରଣାରୁ ମୁକ୍ତି ପାଇବା

ପାଇଁ ସେ ଯେଉଁ "ଉପହାର" ଓ "ପୁଷ୍ପମାଳା" କ୍ଷୁଦ୍ରକବିତା ପୁସ୍ତକ ଲେଖିଥିଲେ ତାହା ଓଡ଼ିଆ ଗୀତି କବିତା-ରାଜ୍ୟରେ, ବିଶେଷତଃ ଊନବିଂଶ ଶତାବ୍ଦୀରେ, ଏକ ଏକ ବ୍ୟତିକ୍ରମ ବ୍ୟଞ୍ଜିତ ଅନ୍ୟ କିଛି ନୁହନ୍ତି । ଏ ସମ୍ପର୍କରେ ମଧୁସୂଦନଙ୍କ ପରେ ଜଣେ ବଳିଷ୍ଠ ଗୀତିକାର ହିସାବରେ ଫକୀର ମୋହନ ଗୃହୀତ ହୋଇପାରନ୍ତି ।

ଫକୀରମୋହନଙ୍କ ପ୍ରକୃତ ସାହିତ୍ୟ ସୃଷ୍ଟି ଆରମ୍ଭ ହୁଏ ୧୮୯୭ ସାଲରୁ, ଶାସକ-ଜୀବନର ଅବସାନ ପରେ । ସମାଲୋଚନା ପ୍ରବନ୍ଧ, ଗୀତିକବିତା, କାବ୍ୟ ( ବୌଦ୍ଧାବତାର ) ପ୍ରଭୃତିରେ ସେ ହାତ ଦେଇଛନ୍ତି; କିନ୍ତୁ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପରେ ସେ କେବଳ ଅମର ହୋଇ ରହିଛନ୍ତି । ତାଙ୍କର ବଂଶ ପରମ୍ପରା ଓ ବ୍ୟକ୍ତିଗତ ଜୀବନର ଗଭୀର ଅନୁଭୂତି, ଏ ଉଭୟ ଉପରେ ସେନାପତି-ସାହିତ୍ୟ-ସୌଧ ପ୍ରତିଷ୍ଠିତ । ଧାର୍ଦ୍ଧ ୨୫ ବର୍ଷ କାଳ ଶାସକ ଜୀବନ ଅତିବାହିତ କରିଥିବାରୁ ସେ ଦୁନିଆର ମନୁଷ୍ୟ ଚରିତ୍ରକୁ ଗଭୀର ଓ ବ୍ୟାପକଭାବେ ଅଧ୍ୟୟନ କରିବାର ସୁଯୋଗ ଲାଭ କରିଥିଲେ । ଲୋକଚରିତ୍ର ନିରୀକ୍ଷଣ କରିବାର ଗଭୀର ଅନ୍ତର୍ଦୃଷ୍ଟି, ମନୁଷ୍ୟର ଦୋଷ ଦୁର୍ବଳତା ପ୍ରତି ସମ୍ବେଦନଶୀଳ ମନୋବୃତ୍ତି, ସର୍ବୋପରି ଜୀବନର ଅମୃତ ରସାସ୍ୱାଦନ ପାଇଁ ନିଜ ମନର ଆକାଂକ୍ଷାତ୍ମକ ଅଭିଳାଷ— ଏ ସମସ୍ତ ସେନାପତି-ସାହିତ୍ୟକୁ ଅତି ଉନ୍ନତ ସୃଷ୍ଟି କଳାରେ ପରିଣତ କରି ଦେଇଛନ୍ତି ।

ଫକୀରମୋହନଙ୍କ ଚୁରୋଟି ଉପନ୍ୟାସ—ଲଛମା, ଛମାଣ ଆଠଗୁଣ୍ଠ, ମାମୁଁ ଓ ପ୍ରାୟଶ୍ଚିତ୍ତ-ଓଡ଼ିଶାର ରାଜନୈତିକ ଓ ସାମାଜିକ ଜୀବନର ଭିତ୍ତିଭୂମିକୁ ଆଶ୍ରୟ କରି ଯଥାର୍ଥ ଉପନ୍ୟାସ ସୃଷ୍ଟି ସମ୍ପଦରେ ଗରୀୟାନ ହୋଇ ଉଠିଛନ୍ତି । ଏ ଉପନ୍ୟାସମାନ

ଅଧ୍ୟୟନ କଲେ ଆମେ ପ୍ରାୟ ଦୁଇଶହ ବର୍ଷ ( ୧୭୬୦-୧୯୬୦ ) ର ଓଡ଼ିଶୀୟ ସାମାଜିକ ଜୀବନର ଏକ ଏକ ଅନବଦ୍ୟ ଚିତ୍ରପଟ ଦେଖିବାକୁ ପାଇବୁଁ । ମରହଟ୍ଟା ଶାସନର ଅପଶାସନ ଓ ଅତ୍ୟାଚାର ଏବଂ ବ୍ରିଟିଶ ଯୁଗରେ ସାମାଜିକ ପରିସ୍ଥିତି, ଏ ଉପନ୍ୟାସର କଥାବସ୍ତୁ ଭିତରେ ସୁମଞ୍ଜୁଳ ଭାବେ ଚିତ୍ରିତ ହୋଇଛି । ଏ ଜୀବନ୍ତ ସମାଜ ଉପନ୍ୟାସ ମାନଙ୍କର ପୃଷ୍ଠଭୂମି ହୋଇଥିବାରୁ ଏଥିରେ ଥିବା ଚରିତ୍ରଗୁଡ଼ିକ ହୋଇଛନ୍ତି ଅତୀବ ପ୍ରାଣବନ୍ତ ଓ ଚିତ୍ତଚମତ୍କାରୀ । ମରହଟ୍ଟା ଅପଶାସନର ନିର୍ମମ କଶାଘାତରେ ଓଡ଼ିଆ ସାମନ୍ତବାଦୀ ସଭ୍ୟତା ଅଧଃପତନର ଅତଳଗର୍ଭକୁ କିପରି ନିକ୍ଷିପ୍ତ ହୋଇଥିଲା ତାର ଏକ କରୁଣ, ମର୍ମନ୍ତୁଦ ଓ ହୃଦୟ ବିଦାରକ ଚିତ୍ର 'ଲଛମା'ରେ ସ୍ଥାନ ପାଇଛି । ବ୍ରିଟିଶ ଶାସନର ପ୍ରଥମଯୁଗରେ ଏ ଦେଶର ଜମିଦାରଶ୍ରେଣୀ ନିଜର ପାରମ୍ପରିକ ଗୌରବ ଓ ପ୍ରତିପତ୍ତି ହରାଇ ବସିବାରୁ ବଳେ ଐତିହ୍ୟଶୂନ୍ୟ, ନୂତନସୃଷ୍ଟ ଜମିଦାର ଏ ଦେଶର ଜନତାରକ୍ତକୁ କିପରି ଶୋଷଣ କରିଥିଲେ ତାର ଚିତ୍ର "ଛମାଣ ଆଠଗୁଣ୍ଠ"ର ରାମଚନ୍ଦ୍ର ମଙ୍ଗରାଜ ଚରିତ୍ରରେ ଫୁଟିଉଠିଛି । ପରବର୍ତ୍ତୀ ସମୟରେ ଆଧୁନିକ ଶିକ୍ଷାଭିମାନୀ ଏକ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀ ନିଜର ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ଏ ଦେଶର ଭାଗ୍ୟଡୋର ନିଜ ହାତକୁ ନେଇ କିପରି ଜାତିର ଭାଗ୍ୟ ନିୟନ୍ତ୍ରଣ କରୁଥିଲେ ତାର ଚିତ୍ର "ମାମୁଁ" ଓ "ପ୍ରାୟଶ୍ଚିତ୍ତ"ରେ ଦେଖିବାକୁ ମିଳେ ।

ଶୋଷଣ ଓ ନିଷ୍ପେଷଣ ସେନାପତି ଉପନ୍ୟାସର ପ୍ରାଣକେନ୍ଦ୍ର ଥିବାରୁ କରୁଣରସର ଅପୂର୍ବ ମୂର୍ଚ୍ଛନା ହୋଇଉଠିଛି ଏ ସାହିତ୍ୟର ପ୍ରକୃତ ସ୍ୱର । ଶୋଷିତ ଓ ନିଷ୍ପେଷିତ ଯେଉଁଠି ଅଥର୍ବ ଓ ବାକ୍‌ଶକ୍ତିହୀନ,

ସେଠି ଏ ଶୋଷଣର ତୀବ୍ରତା ଓ ସାନ୍ଦ୍ରତା ହୁଏ ଆହୁରି ଘନୀଭୂତ ଓ ମର୍ମନ୍ତୁଦ । ସେନାପତିଙ୍କ ଉପନ୍ୟାସ ଏଇ ଘନୀଭୂତ, ମର୍ମଭେଦୀ କରୁଣରସର ମୂର୍ତ୍ତିପ୍ରତୀକ । ଅତ୍ୟାଚାରର ଜର୍ଜରିତ, ଅପମାନଗ୍ରସ୍ତ ଏ ଅଭିଶପ୍ତ ଜାତିର କରୁଣକ୍ରନ୍ଦନ ସେନାପତିଙ୍କ ପ୍ରତ୍ୟକ୍ଷ ଜୀବନର ଅନୁଭୂତି ଓ ଶିଳ୍ପକଳାର ଅଭିବ୍ୟକ୍ତି ଉପରେ ପ୍ରତିଷ୍ଠିତ ଥିବାରୁ ଏ ଉପନ୍ୟାସମାନଙ୍କର ସୃଷ୍ଟି-ସୌନ୍ଦର୍ଯ୍ୟ ସାଧାରଣ ପାଠକ ମନକୁ ମୁଗ୍ଧ କରିଦେଇଥାଏ ।

ଊନବିଂଶ ଶତାବ୍ଦୀର ଶେଷ ତିରିଶବର୍ଷ ଭିତରେ ଏ ଦେଶର ଏକ ନୂତନ ଅଭ୍ୟୁଥିତ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀ ଦେଶ, ଜାତି ଓ ସମାଜର ମଙ୍ଗଳ କାମନାରେ ଯେଉଁ ଆନ୍ଦୋଳନର ସୂତ୍ରପାତ କରିଥିଲେ ତାର ଫଳରେ ଏ ଦେଶର ପରମ୍ପରାଗତ ସାମାଜିକ ସଂସ୍ଥା ଏକ କଠୋର ସମାଲୋଚନାର ଶରବ୍ୟ ହୋଇ ପଡ଼ିଥିଲା । ଆଲୋଚ୍ୟ ସମୟ ମଧ୍ୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷାର ସଂଘର୍ଷହେତୁ ଏ ଦେଶରେ ଇଂରାଜୀଶିକ୍ଷାର କେତେକ କୁଫଳ ମଧ୍ୟ ମୁଣ୍ଡଟେକି ଠିଆ ହୋଇଥିଲା । ଏଇ ଉଭୟ କୁଫଳ-ପାରମ୍ପରିକ କୁସଂସ୍କାର ଓ ନୂତନ ସୃଷ୍ଟ, ଇଂରାଜୀଶିକ୍ଷା ପ୍ରସୂତ କୁସଂସାର—ସେନାପତିଙ୍କ ଗଳ୍ପସାହିତ୍ୟରେ ଅତି ନଗ୍ନରୂପରେ ଚିତ୍ରିତ ହୋଇଛି । ସଂସ୍କାରମୁଖୀ ଯୁଗରେ ଏ ଗଳ୍ପମାନଙ୍କର ଜନ୍ମ ହୋଇଥିଲେହେଁ ଏମାନେ ସାଧାରଣ ପ୍ରଚାରମୂଳକ ସାହିତ୍ୟର ଅନ୍ତର୍ଗତ ନୁହନ୍ତି ; ଲୋକଚିତ୍ତରୁ କୁସଂସ୍କାର ଦୂର କରିବା ଗଳ୍ପକାରଙ୍କ ପ୍ରଧାନ ଲକ୍ଷ୍ୟ ଥିଲେହେଁ ଏଇ ଲକ୍ଷ୍ୟ ସାଧିତ ହୋଇଥିଲା ଏକ ଅଭିନବ ଉପାୟ ସାହାଯ୍ୟରେ । ଏଇ ଉପାୟହିଁ ଏ ଗଳ୍ପମାନଙ୍କୁ ଦେଇଛି ଏକ ଅବିନଶ୍ୱର, ଶାଶ୍ୱତ ସୃଷ୍ଟି-ସୌନ୍ଦର୍ଯ୍ୟ । ସ୍ତ୍ରୀ ଶିକ୍ଷାପ୍ରତି ବିତୃଷ୍ଣା ମନୋଭାବ, ଇଂରାଜୀ

ଶିକ୍ଷାହେତୁ ମଦ୍ୟପାନ ଓ ବେଶ୍ୟାଳୟ ଗମନ, ଶିକ୍ଷା ଲଭକରି ପିତାମାତାଙ୍କ ପ୍ରତି ହତାଦାର ପ୍ରଦର୍ଶନ, ନବପରିଣୀତା ସ୍ତ୍ରୀର ହବା ସମୟରେ ସ୍ୱାମୀମୁଖ ଦର୍ଶନ ନ କରିବା, ସାମାନ୍ୟ ସରକାରୀ ଚାକିରି କରି ଆତ୍ମାଭିମାନରେ ଉନ୍ମତ୍ତ ହେବା, ଧର୍ମନାମରେ ଭଣ୍ଡାମି ଓ ଶଠତାର ପରିପ୍ରଚାର, ଆତ୍ମସ୍ତୁତିର ଛଳନା ଦେଖାଇ ନିରୀହ ଲୋକଙ୍କୁ ଶୋଷଣ କରିବାର ମନୋବୃତ୍ତି — ମାନବ ଚରିତ୍ରର ଏଇ ସହଜ ଦୋଷ-ଦୁର୍ବଳତା ତାଙ୍କ ଲେଖାମାନଙ୍କରେ ଏକ ମନୋହର ଆଙ୍ଗିକ ପରିବେଶ ଭିତରେ ଚିତ୍ରକରି ଏକ ମନୋଜ୍ଞ ସତ୍ୟାଲୋକର ଉଜ୍ଜ୍ୱଳ ବର୍ଣ୍ଣରେ ଦୀପ୍ତିମନ୍ତ ହୋଇ ଉଠିଛନ୍ତି । ସେନାପତି ଥିଲେ ସର୍ବାଂଶରେ ମାନବଧର୍ମୀ । ମାନବୀୟ ଦୋଷ ଦୁର୍ବଳତାକୁ ସେ ଘୃଣା କରୁଥିଲେହେଁ ମାନବ ଥିଲା ତାଙ୍କର ସମସ୍ତ ଆନ୍ତରିକ ସମବେଦନାର ମୂଳପିଣ୍ଡ । ତେଣୁ କୁସଂସ୍କାରଜନ୍ୟ ମନୋବୃତ୍ତିକୁ ସେ ଅତି ନିର୍ମମ ଆଘାତ ଦେଇଛନ୍ତି କିନ୍ତୁ ସେଇ କୁସଂସ୍କାରର ଅଭିନେତାମାନେ ହୋଇଛନ୍ତି ତାଙ୍କ ଗଳ୍ପ ସାହିତ୍ୟର ପରମ ବରଣୀୟ ସୃଷ୍ଟି । ଅପୂର୍ବ ହାସ୍ୟରସର ଉତ୍ତରଙ୍ଗ-ସ୍ରୋତରେ ପାଠକ ଭାସି ଚାଲି ଶେଷରେ ଉପନୀତ ହୁଏ ଏକ ହୃଦୟ ବିଦାରକ କରୁଣରସ ଠାରେ । ଗଳ୍ପର ସମଗ୍ରତାରେ ଝଙ୍କୃତ ହେଉଥିବା କରୁଣରସର ଅପୂର୍ବ ମୂର୍ଚ୍ଛନାହିଁ ସେନାପତି ରଚନାର ଏକ ଅନବଦ୍ୟ ସୃଷ୍ଟି ସମ୍ପଦ । ଦଳିତ, ନିଷ୍ପେଷିତ, ଅତ୍ୟାଚାର ଜର୍ଜରିତ ପ୍ରାଣର ମଧୁର କରୁଣ-ସ୍ୱରଝଙ୍କାର ହେଉଛି ସେନାପତି-ଉପନ୍ୟାସ ଓ ଗଳ୍ପମାନଙ୍କର ପ୍ରକୃତ ପ୍ରାଣକେନ୍ଦ୍ର । ସେନାପତିଙ୍କର ଏ ଶୋଷଣର ଅନୁଭୂତି ଅତି ପ୍ରତ୍ୟକ୍ଷ, ଗଭୀର ଥିବାରୁ ସେ ଏହାକୁ ସାହିତ୍ୟିକ ବାତାବରଣରେ ଫୁଟାଇବାକୁ ଚେଷ୍ଟା କରିଛନ୍ତି । ଓଡ଼ିଆ ଜାତିର ଏ ପେଷଣ-ଶୋଷଣର 'ଟସ ଆଉ

କାହାରି ଲେଖାରେ ଏପରି ପ୍ରାଣବନ୍ତ ହୋଇଥିଲା ପରି ମନେ ହୁଏନାହିଁ ।'

ସେନାପତି ସାହିତ୍ୟର ହାସ୍ୟ ଓ ବିଦ୍ରୂପ, ଚରିତ୍ର ଓ ଭାଷା ଏକାନ୍ତ ଅଭିନବ ଓ ବିସ୍ମୟକର । ତାଙ୍କ "ଉତ୍କଳଭ୍ରମଣ" (୧୮୯୨)ରେ ସେ ଯେଉଁ ଶୁଦ୍ଧ ହାସ୍ୟରସ ଓ ବିଦ୍ରୂପର ମୂଳପତ୍ତନ କରିଥିଲେ ତାହା ତାଙ୍କର ଗଳ୍ପ ଉପନ୍ୟାସମାନଙ୍କରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ଏ ହାସ୍ୟ ଓ ବିଦ୍ରୂପ ଅତୀବ ଉପଭୋଗ୍ୟ ଓ ଆନନ୍ଦଦାୟକ । ସେନାପତିଙ୍କ ପୂର୍ବରୁ ଖାନ୍‌ଦାନୀ ଘରର ଭାଷା ଓ ବାୟୁମଣ୍ଡଳ ଥିଲା ସାହିତ୍ୟ ସୃଷ୍ଟିର ପ୍ରଧାନ ଲକ୍ଷ୍ୟ । ସେ କିନ୍ତୁ ଚିରଅବହେଳିତ ପଲ୍ଲୀର ସନ୍ତାନ ଓ ତାର ସ୍ୱାଭାବିକ ଭାଷାକୁ ଆଶ୍ରୟ କରି ନିଜର ସାହିତ୍ୟ-ସୌଧ ସୃଷ୍ଟିକଲେ । ମନେହୁଏ, ଓଡ଼ିଆ ଜାତି ପ୍ରଥମଥର ପାଇଁ ଏ ଦେଶର ଭାଷା ଓ ମଣିଷକୁ ସେନାପତି-ସାହିତ୍ୟରେ ଦେଖିବାକୁ ପାଇଲା । ସେନାପତି-ସାହିତ୍ୟରେ ଓଡ଼ିଆ ପ୍ରଥମଥରପାଇଁ ନିଜର ଆତ୍ମ-ସତ୍ତାକୁ ଆବିଷ୍କାର କରିବାକୁ ସୁବିଧା ପାଇଲା । ଏ ଆତ୍ମହରା ଜାତିର ପ୍ରାଣ ପ୍ରଥମଥର ପାଇଁ ଏ ସାହିତ୍ୟରେ ପ୍ରତିସ୍ପନ୍ଦିତ ହେବାକୁ ଲାଗିଲା । ଜାତି ତଥା ମଣିଷକୁ ଆବିଷ୍କାର କରିବାର ଏତେ ବଡ଼ ଗୌରବ ସେନାପତିଙ୍କ ପରି ଆଉ କାହାରି ଭାଗ୍ୟରେ ଘଟି ନଥିଲା ।

ରାଧାନାଥ ଓ ମଧୁସୂଦନ ଯଥାକ୍ରମେ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସଭ୍ୟତାର ପ୍ରତୀକ । ଫକୀରମୋହନ, କିନ୍ତୁ, ଓଡ଼ିଆପ୍ରାଣର ସାର୍ଥକ ପ୍ରତିନିଧି । ରାଧାନାଥଙ୍କର ସୃଷ୍ଟି-ପରିକଳ୍ପନା ଯେପରି ମହାନ୍ ତାହା ସେଇପରି ବିରାଟ । ଜନତା ନିକଟରେ ସେ ସାହିତ୍ୟର ଲଳିତ କଳାସୌନ୍ଦର୍ଯ୍ୟ ସମ୍ପୂର୍ଣ୍ଣ ଦୁରଧିଗମ୍ୟ । ଶିକ୍ଷକରୂପରେ ମଧୁସୂଦନ

ଲୋକଙ୍କଠାରେ ପହଞ୍ଚିଛି; କିନ୍ତୁ ତାଙ୍କର ଉଚ୍ଚ ଦାର୍ଶନିକ ଚିନ୍ତାଧାରା ସେମାନଙ୍କ ନିକଟରେ ସମ୍ପୂର୍ଣ୍ଣ ଦୁର୍ବୋଧ । ଅନ୍ୟପକ୍ଷରେ ଫକୀରମୋହନ ଏ ମାଟିର ଯଥାର୍ଥ ସନ୍ତାନ; ତେଣୁ ସେ ଲୋକଙ୍କ ନିକଟରେ ଅତି ଆପଣାର ହୋଇ ଉଠିଛନ୍ତି । ସେନାପତିଙ୍କର ଜନପ୍ରିୟତା ଏଇ ଅଭିମତ ଉପରେ ଯେ ପ୍ରତିଷ୍ଠିତ ତାହା ଅସ୍ୱୀକାର କରାଯାଇନପାରେ ।

**ସମସାମୟିକ ସାହିତ୍ୟ ସୃଷ୍ଟି :—** ଇନ୍ଦ୍ରଧନୁ-ବିଜୁଳି (୧୮୯୩-୯୪) ଏ ଦେଶରେ ଏକ ବିକ୍ଷୁବ୍ଧ ବାୟୁମଣ୍ଡଳ ସୃଷ୍ଟି କରିଥିଲା । ସେଇ ହଳାହଳ ଭିତରୁ ନୂତନ ସାହିତ୍ୟାଦର୍ଶର ଅମୃତୋପମ ସୃଷ୍ଟିକୁ ଯେଉଁ କେତେଜଣ କବି ପରବର୍ତ୍ତୀ ସମୟରେ ରଚନା କଲେ ସେମାନଙ୍କ ମଧ୍ୟରେ ସେନାପତିଙ୍କ ସହିତ ଗଙ୍ଗାଧର ଓ ନନ୍ଦକିଶୋର ହେଉଛନ୍ତି ଅନ୍ୟତମ । ଆଧୁନିକ ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ହୋଇ ମଧ୍ୟ ଗଙ୍ଗାଧର ମେହେର (୧୮୬୨-୧୯୨୪) ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି କରିବାରେ ଏକ ଅଦ୍ଭୁତ କବି-ପ୍ରତିଭା ଦେଖାଇଯାଇଛନ୍ତି । ସେ ସୃଷ୍ଟି ପ୍ରତିଭା ଏ ଦେଶରେ ଏକାନ୍ତ ଦୁର୍ଲଭ । ପୁରାତନ ଓଡ଼ିଆ ଓ ସଂସ୍କୃତ ସାହିତ୍ୟାଦର୍ଶର ଅନୁସରଣରେ ସେ ପ୍ରଥମେ କବି-ଜୀବନ ଆରମ୍ଭ କରନ୍ତି । ତାଙ୍କର ପ୍ରଥମ ରଚନା "ରସ ରତ୍ନାକର" କାବ୍ୟ "ର" ଆଦ୍ୟ-ପ୍ରାନ୍ତ ନିୟମରେ ରଚିତ । ରସକଲ୍ଲୋଳ, କଳା କଉତୁକର ପ୍ରଭାବ ଏଠାରେ ସୁସ୍ପଷ୍ଟ । ଦ୍ୱିତୀୟ ରଚନା "ଅହଲ୍ୟା ସ୍ତବ" (୧୮୯୨)ରେ ସେ ସଂସ୍କୃତ ବୃତ୍ତକୁ ଓଡ଼ିଆରେ ଅନୁସରଣ କରିଛନ୍ତି । କିନ୍ତୁ ଆଧୁନିକ ଯୁଗ ଯେ ପୁରାତନ ସାହିତ୍ୟର ପୁନରୁତ୍ଥାନ ଯୁଗ ନୁହେଁ ତାହା ସେ ହୃଦୟଙ୍ଗମ କରି ଆଧୁନିକ ରୁଚି ଅନୁକୂଳ କାବ୍ୟ ରଚନାରେ ହାତ ଦେଇଛନ୍ତି । "ଇନ୍ଦୁମତୀ" (୧୮୯୩) ଓ

"ଉତ୍କଳ ଲକ୍ଷ୍ମୀ" (୧୮୯୪) ଏହି ନୂତନ କବି ପ୍ରତିଭାର ପ୍ରଥମ ସଙ୍କେତ ଦିଅନ୍ତି । ଏହି ପ୍ରତିଭାର ସାର୍ଥକ ଅଭିବ୍ୟକ୍ତି ଘଟିଛି "କୀଚକ ବଧ" (୧୯୦୩) କାବ୍ୟରେ । କାବ୍ୟର କଳାଗତ ସୌନ୍ଦର୍ଯ୍ୟ ଭିତରେ ଏକ ଗଭୀର ଜାତୀୟତା ଭାବ ଆମେ ମେହେରଙ୍କ ସାହିତ୍ୟରେ ଅନୁଭବ କରିଥାଉଁ । ସମ୍ବଲପୁରରେ ଓଡ଼ିଆ ଭାଷାର ଲୋପ ସାଧନ (୧୮୯୬)କୁ ଲକ୍ଷ୍ୟ ରଖି ସେ ଯେଉଁ "ଭାରତୀ ବେଦନ" (ତା ୩-୧୦-୧୮୯୪) ଓ "ଉତ୍କଳ ଭାରତୀଙ୍କ ନିବେଦନ" (ତା ୬-୩-୧୮୯୫) ନାମକ ଦୁଇଟି କବିତା ରଚନା କରିଥିଲେ, ସେଥିରେ ତାଙ୍କର ଜାତୀୟତା ଭାବ ପ୍ରଥମେ ପ୍ରକଟିତ ହୋଇଥିଲା । ପରବର୍ତ୍ତୀ ସମୟରେ ଅନୁଷ୍ଠିତ ହୋଇଥିବା "ଉତ୍କଳ ସମ୍ମିଳନୀ" (୧୯୦୩) ଏହି ଭାବକୁ ଏକ ଦୃଢ଼ତର ଭିତ୍ତି ଉପରେ ପ୍ରତିଷ୍ଠା କଲା । ବିଂଶ ଶତାବ୍ଦୀରେ ରଚିତ ବିଭିନ୍ନ "ଗୀତିକବିତା", "ତପସ୍ୱିନୀ" (୧୯୧୨) ଓ "ପ୍ରଣୟ ବଲ୍ଲରୀ" (୧୯୧୫) କାବ୍ୟ ତାଙ୍କ ସୃଷ୍ଟି ମାନସର ଏକ ଏକ ଅମଳିନ କୀର୍ତ୍ତି । କାବ୍ୟର ସମସ୍ତ ଗାମ୍ଭୀର୍ଯ୍ୟ ଓ ସୌଷ୍ଠବତା ସଂରକ୍ଷଣ କରି ଭାଷାକୁ ସହଜ କରିବାର ନେତୃତ୍ୱ ନେଇଥିଲେ ପ୍ରଥମେ ରାଧାନାଥ; ମେହେର କବି ଏ ଦିଗରେ ଆହୁରି ଅଗ୍ରସର ହୋଇ କାବ୍ୟକୁ ଭାଷାକୁ ମଧୁର, ସରଳ ଓ କୋମଳ କରି ଦେଇଥିଲେ । ପ୍ରକୃତିର ଅପାରଶୋଭା ଚିତ୍ର ଅଙ୍କନ କରିବାରେ ମେହେର ଅପୂର୍ବ ଦକ୍ଷତା ପ୍ରକାଶ କରିଛନ୍ତି । ସଂସ୍କୃତ ସାହିତ୍ୟର କାଳିଦାସ ଓ ଭବଭୂତି ପ୍ରଭୃତି କବିମାନଙ୍କ ପନ୍ଥାନୁସରଣ କରି କାବ୍ୟରେ ଆଦର୍ଶ ନରନାରୀ ଓ ସେମାନଙ୍କ ଜୀବନାଦର୍ଶ ଅତି ସଫଳତା ସହ ସେ ଫୁଟାଇ ପାରିଛନ୍ତି । ଜାତୀୟତାଭାବ ଓ ଈଶ୍ୱରଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଯେଉଁ କେତୋଟି ଗୀତି କବିତାରେ ରୂପାୟିତ ହୋଇଛନ୍ତି ସେସବୁ

ତାଙ୍କର ମୌଳିକ କବି ପ୍ରତିଭାର ସଙ୍କେତ ଦିଅନ୍ତି । ପଲ୍ଲୀକବି ନନ୍ଦକିଶୋର ବଳ (୧୮୭୫-୧୯୨୮) ପଲ୍ଲୀର ଧୂଳି-ମାଟି, ପାଣି-ପବନ, ନିଃଶ୍ୱାସ-ପ୍ରଶ୍ୱାସକୁ ପ୍ରଥମେ ସରଳ ତରଳ ଭାଷାରେ କବିତାରେ ପ୍ରକାଶ କଲେ । "ପଲ୍ଲୀଚିତ୍ର" (୧୮୯୮) ନନ୍ଦକିଶୋରଙ୍କ ମୌଳିକ କବି ପ୍ରତିଭାର ଅନବଦ୍ୟ ସୃଷ୍ଟି-ସମ୍ପଦ । "ନିର୍ଝରିଣୀ" (୧୯୦୦)ରେ କବି-ମନର ସ୍ୱାଭାବିକ ଭାବଧାରା ନିର୍ଝର-ଗତି-ସୌନ୍ଦର୍ଯ୍ୟରେ ମୁଖରିତ । ପଲ୍ଲୀ ପ୍ରବଚନ ଓ ପଲ୍ଲୀ ସଙ୍ଗୀତରୁ ନିଜ କବିତାର ରାଗରାଗିଣୀ ସଂଗ୍ରହ କରି ନନ୍ଦକିଶୋର ପଲ୍ଲୀର ଯଥାର୍ଥ ଜୀବନ ସ୍ପନ୍ଦନକୁ ନବ ନବ ରୂପ ସମ୍ପଦରେ ବିଭୂଷିତ କରିଥିଲେ । ତାଙ୍କର ଏକମାତ୍ର ଉପନ୍ୟାସ "କନକଲତା"ରେ ସେ ଜଣେ ବିଦ୍ରୋହୀ ସମାଜ ସଂସ୍କାରକ ରୂପେ ଦେଖାଦେଇଛନ୍ତି । ରାଜପୁତ ଜାତିର ବଳିଷ୍ଠ ସ୍ୱାର୍ଥତ୍ୟାଗ ଭିତରେ ସେ ଯେଉଁ ଜାତି ଜାଗ୍ରତା ଭାବ ଫୁଟାଇଛନ୍ତି ସେଇ ଭାବଟି ଓଡ଼ିଶାକୁ କେନ୍ଦ୍ରକରି କେତେକ ଗୀତି କବିତାରେ ମଧ୍ୟ ଧରା ଦେଇଛି । ସମାଜ ସଂସ୍କାରକ ନନ୍ଦକିଶୋର ଯେଉଁ କେତେକ ପ୍ରବନ୍ଧ ଓ ନୀତି କବିତାରେ ସଂସ୍କାର ଭାବ ପ୍ରଚାର କରିଛନ୍ତି ସେଥିରୁ "ଜେମାଦେଈ" କବିତାଟି ଅତି ଉଚ୍ଚ କୋଟୀର ସୃଷ୍ଟି । ମଧୁସୂଦନ ଓ ଫକୀରମୋହନଙ୍କ ପରେ ଓଡ଼ିଆ ଗୀତି କବିତା ରାଜ୍ୟରେ ନନ୍ଦକିଶୋରଙ୍କ ସ୍ଥାନ ନିର୍ଦ୍ଦିଷ୍ଟ ହୋଇପାରେ ।

ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋରଙ୍କ ସାହିତ୍ୟ, ଯେପରି ମନେହୁଏ ରାଧାନାଥ-ସାହିତ୍ୟ-ପରମ୍ପରାର କେବଳ ବ୍ୟତିକ୍ରମ ନୁହେଁ, ମୌନ ପ୍ରତିବାଦର ଜ୍ୟୋତିକ ମଧ୍ୟ । ପାଶ୍ଚାତ୍ୟ-ଚିନ୍ତାଧାର । ଆଧୁନିକ ଶିକ୍ଷା-ମାଧ୍ୟମରେ ଯେତେବେଳେ ପ୍ରାଚ୍ୟ ଚିନ୍ତାଧାରା ସହିତ ସମନ୍ୱିତ ହେଉଥିଲା ସେତେବେଳେ ରାଧାନାଥ ଓ ମଧୁସୂଦନ ଯଥାକ୍ରମେ ସାହିତ୍ୟ ଓ ଧର୍ମ ମତବାଦର ଆଶ୍ରୟରେ

ସେଇ ସମନ୍ୱୟର ବାର୍ତ୍ତା ପ୍ରଚାର କରିଥିଲେ । ୧୮୬୦-୭୦ ସାଲରେ ପାଠ୍ୟପୁସ୍ତକ ଓ ୧୮୭୧-୯୫ ସାଲରେ ଆଧୁନିକ ସାହିତ୍ୟରେ ସେଇ ସମନ୍ୱୟର ଉନ୍ମେଷ ଓ ବିକାଶ ସାଧିତ ହୋଇଥିଲା । ଏ ଉଭୟ ସ୍ରଷ୍ଟା ସମନ୍ୱୟର ଦ୍ୱିତୀୟ ପର୍ଯ୍ୟାୟରେ ଅବସ୍ଥାନ କରିଥିବାରୁ ନିଜ ନିଜ କୃତି ଭିତରେ ଅସଫଳତା କେତେକ ପରିମାଣରେ ଦେଖାଇଥିଲେ । ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର, କୁନ୍ତଳ, ସମନ୍ୱୟର ତୃତୀୟ ପର୍ଯ୍ୟାୟରେ ଅବସ୍ଥାନ କରିଥିଲେ । ଫଳରେ ପୂର୍ବସୂରୀମାନଙ୍କ ଅସଫଳତା ବିଷୟରେ ଏମାନେ ସମଧିକ ସଚେତନ ହୋଇ ପଡ଼ିଥିଲେ । ସାହିତ୍ୟ ଭିତରେ କଳାର ସର୍ବଶ୍ରେଷ୍ଠ ମହତ୍ତ୍ୱ ପ୍ରତିଷ୍ଠା କଲାବେଳେ ମତ-ଅମତର ପ୍ରଶ୍ନ ସଂପୂର୍ଣ୍ଣ ଅବାନ୍ତର, ରାଧାନାଥ ସାହିତ୍ୟ ସୃଷ୍ଟିର ଏ ଲକ୍ଷ୍ୟ ଫକୀରମୋହନ ପ୍ରଭୃତି ଲେଖକମାନଙ୍କୁ ଆକୃଷ୍ଟ କରିପାରି ନଥିଲା । ନରନାରୀ ଚରିତ୍ର ଅଙ୍କନ କଲାବେଳେ ଗୋଟାଏ ଆଦର୍ଶର ଭାବ ସେମାନଙ୍କର ଚିତ୍ତ ଅଧିକାର କରି ବସିଥିଲା । ଏକ ବଳିଷ୍ଠ ସାମାଜିକତା-ମୂଲ୍ୟ ଉପରେ ସେମାନେ ପ୍ରାଧାନ୍ୟ ଦେବାରୁ ସେମାନଙ୍କ ସାହିତ୍ୟର ଅନ୍ତଃରୂପଟି ରାଧାନାଥଙ୍କ ସୃଷ୍ଟି ଲକ୍ଷ୍ୟଠାରୁ ପୃଥକ୍ ହୋଇ ପଡ଼ିଲା । ଫଳରେ ସେଇ ଚିନ୍ତା-ସମନ୍ୱୟର ଆଶ୍ରୟରେ ସେମାନେ ଯେଉଁ ସାହିତ୍ୟ ତିଆରି କଲେ ତାହା ବିଦେଶୀ ସାହିତ୍ୟର ଆଦର୍ଶରେ ଗଢ଼ି ଉଠିଥିଲେ ସୁଦ୍ଧା ଏ ଦେଶ ଲୋକଙ୍କ ଜୀବନ-ଧାରା ଓ ଜୀବନାଦର୍ଶ ସହିତ ସଂପୂର୍ଣ୍ଣ ମିଳିଯିବାକୁ ବାଧ୍ୟ ହେଲା । ଏଇ ଚିନ୍ତା-ସମନ୍ୱୟର ଇତିହାସ ନ ଜାଣିଲେ ବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ଯେ କାହିଁକି ଏ ଦେଶ ମାଟି ସହିତ ଅଧିକ ଯୋଗସୂତ୍ର ସ୍ଥାପନ କରିଛି ତାହା ବୁଝି ହେବ ବୋଲି ମନେ ହୁଏନାହିଁ ।

ବିଂଶ ଶତାବ୍ଦୀର ପ୍ରଥମ କୋଡ଼ିଏ ବର୍ଷ ଭିତରେ କାବ୍ୟ ଓ ଗୀତି କବିତାରେ ବହୁ ଲେଖକ ହାତ ଦେଇଛନ୍ତି । ଯଥା:— ଚିନ୍ତାମଣି ମହାନ୍ତି, ମଦନମୋହନ ପଟ୍ଟନାୟକ, ଦୀନବନ୍ଧୁ କାବ୍ୟ-ରଞ୍ଜନ, ପଦ୍ମଚରଣ ପଟ୍ଟନାୟକ, କୃଷ୍ଣମୋହନ ପଟ୍ଟନାୟକ, ଲକ୍ଷ୍ମୀକାନ୍ତ ମହାପାତ୍ର ଇତ୍ୟାଦି । ଏମାନଙ୍କ ମଧ୍ୟରେ ଚିନ୍ତାମଣି ମହାନ୍ତି ବହୁ କାବ୍ୟ, ଉପନ୍ୟାସ, ଗଳ୍ପ ଓ କ୍ଷୁଦ୍ର କବିତାରେ ହାତ ଦେଇଛନ୍ତି; ହେଲେହେଁ ସେ ସର୍ବତ୍ର ରାଧାନାଥଙ୍କର ଅନୁସରଣ କରିଛନ୍ତି ମାତ୍ର । ଗୀତିକବିତାର ଆଙ୍ଗିକ ଓ ଆତ୍ମିକ ସ୍ୱରୂପ କେତେକ ଲେଖକଙ୍କ ହାତରେ ବହୁ ରୂପରେ ଗତି କରିଥିଲା । ଗୀତି-କବିତାର ସୌନ୍ଦର୍ଯ୍ୟ ବର୍ଦ୍ଧକ "ମାତ୍ରାବୃତ୍ତଛନ୍ଦ" ଏହି ସମୟଠାରୁ ଏ ସାହିତ୍ୟରେ ପ୍ରବେଶ ଲାଭ କଲା । ଲକ୍ଷ୍ମୀକାନ୍ତ ମହାପାତ୍ର ନିଜ ଜୀବନକୁ ତିଳ ତିଳ ହତ୍ୟାକରି ଯେଉଁ ଅଜସ୍ର ଲଳିତା, ହାସ୍ୟ-ରସାତ୍ମକ କବିତା ଏ ଦେଶର ପାଠକମାନଙ୍କୁ ପରିବେଷଣ କରିଛନ୍ତି, ତାର ତୁଳନା ଏ ସାହିତ୍ୟରେ ଏକାନ୍ତ ଅଭିନବ । କ୍ଷୁଦ୍ରଗଳ୍ପ ରଚନା ଦିଗରେ ଲକ୍ଷ୍ମୀକାନ୍ତ, ଚନ୍ଦ୍ରଶେଖର ନନ୍ଦ, ବାଞ୍ଛାନିଧି ପଟ୍ଟନାୟକ, ଦୟାନିଧି ମିଶ୍ର, ଦିବ୍ୟସିଂହ ପାଣିଗ୍ରାହୀ ପ୍ରଭୃତି ଲେଖକମାନେ କେବଳ ଗତାନୁଗତିକଭାବରେ ସମାଜ ସଂସ୍କାର ଓ ଜାତିପ୍ରୀତି ଭାବକୁ କେନ୍ଦ୍ରକରି ଗଳ୍ପ ଲେଖିଛନ୍ତି । ଏମାନଙ୍କ ମଧ୍ୟରେ ଦୟାନିଧି ମିଶ୍ର ଐତିହାସିକ କ୍ଷୁଦ୍ରଗଳ୍ପ ଲେଖି ଗଳ୍ପରାଜ୍ୟରେ ଏକ ନୂତନ ବାତାବରଣ ସୃଷ୍ଟି କରିଛନ୍ତି । ହାସ୍ୟରସ ରସିକ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଲେଖାଗୁଡ଼ିକରେ ଏକ ଶାଣିତ ବିଦ୍ରୂପ ଓ ହାସ୍ୟରସ ଦେଖିବାକୁ ମିଳେ । କେତେକ ଶିଶୁସଙ୍ଗୀତ ରଚନା ଓ ପଲ୍ଲୀକାହାଣୀ ସଂଗ୍ରହ ବ୍ୟତୀତ ସେ ପରବର୍ତ୍ତୀ ଜୀବନରେ ଏକ ବିରାଟ "ପୂର୍ଣ୍ଣଚନ୍ଦ୍ର ଭାଷାକୋଷ" ସଂକଳନ କରି ଏ ସାହିତ୍ୟରେ ଅକ୍ଷୟ ଯଶ ଅର୍ଜନ

କରିଛନ୍ତି । ନାଟ୍ୟକାର କାମପାଳଙ୍କ ବ୍ୟତୀତ ହରିହର ରଥ ଓ ଦକ୍ଷିଣର କେତେକ ରାଜାଙ୍କ ହେତୁ ନାଟ୍ୟ ରଚନା ଅବ୍ୟାହତ ଭାବେ ଗତିକରି ଚାଲିଥିଲା । ପାରଳାମହାରାଜା ସ୍ୱର୍ଗୀୟ ପଦ୍ମନାଭ ନାରାୟଣଦେବ (୧୮୭୨-୧୯୦୪) ଏବଂ ଚତ୍ରକଣ୍ଠୀ ଅଧୀଶ୍ୱର ଶ୍ରୀରାଧାମୋହନ ରାଜେନ୍ଦ୍ରଦେବ ନିଜ ନିଜ ରାଜ୍ୟ ମଧ୍ୟରେ ନାଟ୍ୟଦଳ ସଂଗଠନ, ମଞ୍ଚନିର୍ମାଣ ଓ ନାଟକ ରଚନା ଉପରେ ପ୍ରାଧାନ୍ୟ ଦେଇ ଓଡ଼ିଆ ନାଟକ-ସାହିତ୍ୟକୁ ଜୀବିତ ରଖିଥିଲେ । ଉତ୍ତର ଓଡ଼ିଶାରେ ରାମଶଙ୍କରଙ୍କ ସହିତ ଭିକାରୀ ଚରଣ ପଟ୍ଟନାୟକ ମଧ୍ୟ ନାଟକ ରଚନାରେ ହାତ ଦେଇଥିଲେ । ଓଡ଼ିଆ ଯାତ୍ରା ସଂସ୍କାର ବିଷୟରେ ରାମଶଙ୍କର ଓ ପ୍ରାବନ୍ଧିକ କୃଷ୍ଣପ୍ରସାଦ ଚୌଧୁରୀ ବହୁ ମୂଲ୍ୟବାନ ଉପଦେଶ ବିତରଣ କରିଥିଲେ । ଗୋବିନ୍ଦଚନ୍ଦ୍ର ସୂରଦେଓ ମଧ୍ୟ ଯାହାକୁ ଏକ ମାର୍ଜିତ ରୂପଦେଇ ଲୋକ ଚିତ୍ତରେ ଆନନ୍ଦ ଓ ମାର୍ଜିତ ଭାବଧାରା ଦେବାରେ ଅସୀମ ସାଧନା କରିଥିଲେ ।

ଆଲୋଚ୍ୟ ସମୟ (୧୮୯୭-୧୯୨୦)ରେ ସାହିତ୍ୟ ସମାଲୋଚନା ଓ ଗବେଷଣାର ଅଗ୍ରଗତି ଆଦୌ ଅସନ୍ତୋଷଜନକ ନ ଥିଲା । ପଣ୍ଡିତ ଗୋପୀନାଥ ନନ୍ଦ କେତେକ ସଂସ୍କୃତ ନାଟକ ଓ କାବ୍ୟ ଓଡ଼ିଆରେ ଅନୁବାଦ କରିଥିଲେ । ଓଡ଼ିଆ ଭାଗବତ, ଦାଣ୍ଡିରାମାୟଣ, ବିଶେଷତଃ ସାରଳା ମହାଭାରତର ସମାଲୋଚନା ବେଳେ ସେ ଯେଉଁ ଅନ୍ତର୍ଦୃଷ୍ଟି, ଗଭୀର ପାଣ୍ଡିତ୍ୟ, ବହୁ ଶାସ୍ତ୍ରଦର୍ଶିତା ଓ ଅଗାଧ ଜ୍ଞାନର ପରିଚୟ ଦେଇଛନ୍ତି ତାହା ଏକାନ୍ତ ବିସ୍ମୟକର । ପାଲି-ପ୍ରାକୃତ-ସଂସ୍କୃତ ଭାଷାରେ ଗଭୀର ଜ୍ଞାନ ଅର୍ଜନ କରି ସେ ଯେଉଁ ଓଡ଼ିଆ ଭାଷାତତ୍ତ୍ୱ ଲେଖିଛନ୍ତି ତାର ତୁଳନା ନାହିଁ କହିଲେ ଚଳେ । ଓଡ଼ିଆ ଅଭିଧାନ ସଂକଳନରେ ମଧ୍ୟ ସେ ବହୁ ଯଶ ଅର୍ଜନ କରିଛନ୍ତି । ସଂସ୍କୃତ ଛନ୍ଦରେ ଗଣବସୂମ ଓଡ଼ିଆରେ ଅନୁସରଣ

କରିବାରେ ରାଧୁନାଥ ପରିଚ୍ଛାଙ୍କ ପରେ ସେ ହେଉଛନ୍ତି ଦ୍ୱିତୀୟ ବ୍ୟକ୍ତି । ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ବିଭିନ୍ନ ପ୍ରବନ୍ଧ ବିଶେଷତଃ ତାଙ୍କର ସାରଳା ଜୀବନୀ ସଂଗ୍ରହ ଓ ତାଙ୍କ ମହାଭାରତ ପ୍ରଖ୍ୟାପନ ତାଙ୍କର ଏକ ଅକ୍ଷୟ କୀର୍ତ୍ତି । ଓଡ଼ିଆ ସାହିତ୍ୟର କବିମାନଙ୍କ ଜୀବନୀ ସଂଗ୍ରହ ଓ ସେମାନଙ୍କ କାବ୍ୟର ଅନୁଶୀଳନରେ ଏବଂ ଓଡ଼ିଆ ଛନ୍ଦର ବିଶ୍ଳେଷଣରେ ଶ୍ୟାମସୁନ୍ଦର ରାଜଗୁରୁ ଯେଉଁ ମୌଳିକ ଦୃଷ୍ଟିଭଙ୍ଗୀ ଓ ଅନୁଶୀଳନ ପିପାସାର ପରିଚୟ ଦେଇଛନ୍ତି ତାହା ଏବେ ମଧ୍ୟ ଦେଖିବା ସହଜ ନୁହେଁ । ପ୍ରାବନ୍ଧିକ ଶଶୀଭୂଷଣ ରାୟ ଆକାର ଦୃଷ୍ଟିରୁ ଯେତେ ପ୍ରବନ୍ଧ ଲେଖିଛନ୍ତି ତା ସହିତ ପ୍ରତିଯୋଗୀ ହେବାକୁ ଓଡ଼ିଶାରେ ଆଜି କାହାରି ସେତେ ଅଛି ବୋଲି ମନେହୁଏ ନାହିଁ ।

**ଓଡ଼ିଆ ସାହିତ୍ୟରେ "ସତ୍ୟବାଦୀ" ଚିନ୍ତାଧାରା:—**

ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା (୧୯୦୩), ବଙ୍ଗ ବିଚ୍ଛେଦ ଆନ୍ଦୋଳନ (୧୯୦୫) ଓ ବିହାର-ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶଗଠନ (୧୯୧୨) ପ୍ରଭୃତି ବିଂଶଶତାବ୍ଦୀ ପ୍ରଥମପାଦର ଘଟଣା ଗୁଡ଼ିକ ଓଡ଼ିଆ ଶିକ୍ଷିତ ଯୁବକମାନଙ୍କ ହୃଦୟରେ ନୂତନ ପ୍ରେରଣା, ନବ-ଉତ୍ସାହ ଓ ବଳିଷ୍ଠ ଜାତୀୟତାଭାବ ଖେଳାଇ ଦେଇଥିଲେ । ଏହି ନବ ଉତ୍ସାହର ସ୍ରୋତ ପ୍ରଥମେ ୧୮୬୮ ସାଲରୁ ସମୟକ୍ରମେ "ଦୀପିକା", "ବାହିକା", "ନବସମ୍ବାଦ" "ହିତୈଷିଣୀ" ଓ ଅନ୍ୟାନ୍ୟ ପତ୍ରପତ୍ରିକା ମାଧ୍ୟମରେ ଊନବିଂଶ, ଶତାବ୍ଦୀରେ ଉଦ୍‌ଜୀବିତ ରହି ମଧୁସୂଦନ ଦାସଙ୍କଠାରେ ପରିପୂର୍ଣ୍ଣ ଅଭିବ୍ୟକ୍ତି ଲାଭ କରିଥିଲା । ମଧୁସୂଦନ ସେହି ନବଚେତନାକୁ ସଂଗଠିତ, ସଂବର୍ଦ୍ଧିତ ତଥା ନିୟନ୍ତ୍ରିତ କରି ତାକୁ ଅନ୍ୟ ଏକ ନୂତନ ରୂପ ପ୍ରଦାନ କରିଥିଲେ । 'ଉତ୍କଳ-ସମ୍ମିଳନୀ'ର ପ୍ରାଣପ୍ରତିଷ୍ଠାତା ମିଷ୍ଟର ମଧୁସୂଦନଦାସ ଯଦି ହୁଅନ୍ତି

ଏଇ ପରିବର୍ତ୍ତିତ ନବ ଜାଗରଣର ପ୍ରଥମ ଜନ୍ମଦାତା ତାହେଲେ ଗୋପବନ୍ଧୁ ଦାସ ହେଉଛନ୍ତି ସେଇ ଜନ ଜାଗରଣର ଯଥାର୍ଥ ପାଳକ ଓ ସଂବର୍ଦ୍ଧକ । ଗୋପବନ୍ଧୁ ଦାସ ନିଜର ଅନ୍ୟାନ୍ୟ ସହକର୍ମୀମାନଙ୍କ ସହଯୋଗରେ ସତ୍ୟବାଦୀ ବକୁଳ- ବନ-ବିଦ୍ୟାଳୟକୁ କେନ୍ଦ୍ରକରି ଯେଉଁ ଜାତୀୟତାର ଭାବ ଏ ଦେଶରେ ବୁଣ୍ଡାଇ ନୂତନ ଜ୍ଞାନାଲୋକ ବିତରଣ କରିଥିଲେ ତାହା ଏ ଜାତି-ଇତିହାସରେ ଏକାନ୍ତ ଅଭିନବ ଓ ବିସ୍ମୟକର । ଗତାନୁଗତିକ ପନ୍ଥାରେ ଜୀବନର ଜୀବିକା-ଉପାର୍ଜନ ପାଇଁ ଛାତ୍ରମାନଙ୍କୁ ପ୍ରସ୍ତୁତ କରାଇବାର ନୀତି ପରିହାର କରି ସେମାନଙ୍କ ଅନ୍ତର୍ନିହିତ ମନୁଷ୍ୟତ୍ୱକୁ ଯଥାର୍ଥଭାବେ ବିକାଶ-ମୁଖୀ କରାଇବା ଥିଲା ସତ୍ୟବାଦୀ ବନ-ବିହାର-ଶିକ୍ଷାର ଚରମ ଲକ୍ଷ୍ୟ ଓ ଏଇ ଲକ୍ଷ୍ୟ ସାଧନ ପାଇଁ ସତ୍ୟବାଦୀ ସ୍କୁଲର କର୍ମୀମାନଙ୍କୁ ନିଜନିଜ ଜୀବନ ଉତ୍ସର୍ଗ ମଧ୍ୟ କରିବାକୁ ପଡ଼ିଥିଲା । ଦେଶ ତଥା ଜାତିର ପ୍ରାଣପ୍ରତିଷ୍ଠା ପାଇଁ ସ୍ୱାର୍ଥତ୍ୟାଗ ଭିତରେ ଏପରି ଅପୂର୍ବ ଜନ ଜାଗରଣର ବାତାବରଣ ତିଆରି କରିବା ସର୍ବସ୍ୱତ୍ୟାଗୀ ସତ୍ୟବାଦୀ-ବିହାର ଅଧ୍ୟାପକମାନଙ୍କ ପକ୍ଷରେ ଏକମାତ୍ର ସମ୍ଭବପର ହୋଇଥିଲା । ଜୀବନର ଏଇ ଜୀବନ୍ତ କ୍ରିୟା କଳାପ ସେମାନଙ୍କ ସାହିତ୍ୟରେ ମଧ୍ୟ ପ୍ରତିଫଳିତ ହେଲା । ସେ ସାହିତ୍ୟର ଅଭିମୁଖ୍ୟ ଥିଲା ତିନୋଟି, ଯଥା:—(କ) ସମାଜ ସଂସ୍କାର ମନୋବୃତ୍ତି, (ଖ) ଜାତୀୟତା ତଥା ଦେଶ ପ୍ରୀତି ଓ (ଗ) ଜନସେବା । ସମାଜର ଯାହା ଅମଙ୍ଗଳକର ତାକୁ ସଂଶୋଧନ କରି ସେଥିରେ ଜାତିପ୍ରତି ନିଜର ମମତା ପ୍ରଦର୍ଶନ ଓ ଦେଶବାସୀ-ମାନଙ୍କ ସେବା-ମାଧ୍ୟମରେ ସମଗ୍ର ମାନବ ସମାଜର କଲ୍ୟାଣ ସାଧନ-ଏହାହିଁ ଥିଲା ସେ ସାହିତ୍ୟର ଅନ୍ତଃସ୍ୱର । ଊନବିଂଶ ଶତାବ୍ଦୀର ଶେଷ ୩୦ ବର୍ଷ ଭିତରେ ପୂର୍ବୋକ୍ତ ତିନୋଟି ଚିନ୍ତାଧାରା

ଆବ୍ୟାହତ ଭାବରେ ଗତିକରି କେବଳ ସତ୍ୟବାଦୀ-ଜନନାୟକ ମାନଙ୍କଠାରେ ପରିପୂର୍ଣ୍ଣତା ଲାଭ କରିଥିଲା ।

ଏ ଛଅଜଣଙ୍କ ଚିନ୍ତାର ପ୍ରାଣ-କେନ୍ଦ୍ର ଥିଲେ ଦେଶବନ୍ଧୁ ଗୋପବନ୍ଧୁ ଦାସ । ଗୋପବନ୍ଧୁଙ୍କ ଅଗ୍ନି ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ଲିଙ୍ଗରାଜ ଓ ହରିହର । ଏମାନଙ୍କ ସାହିତ୍ୟ ଅନୁଧ୍ୟାନ କଲେ ଜଣାଯାଏ, ଏମାନେ ହେଉଛନ୍ତି ଗୋପବନ୍ଧୁଙ୍କ ଚିନ୍ତାଧାରାର ବାହ୍ୟ ପରିପ୍ରକାଶ ମାତ୍ର । ହରିହର ଦାସ ଜନସେବାକୁ ଜୀବନର ଏକମାତ୍ର ବ୍ରତରୂପେ ଆଜପର୍ଯ୍ୟନ୍ତ ଗ୍ରହଣ କରି ଆସିଛନ୍ତି । ପଣ୍ଡିତ ଲିଙ୍ଗରାଜ ମିଶ୍ର ଯଥାର୍ଥରେ ପଣ୍ଡିତ । ସଂସ୍କୃତ ରାମାୟଣ ଅନୁବାଦ କରି ସେ ଓଡ଼ିଆ ସାହିତ୍ୟରେ ବିଶେଷ ଯଶ ଅର୍ଜନ କରିଯାଇଛନ୍ତି । ଐତିହାସିକ କୃପାସିନ୍ଧୁ ମିଶ୍ର ଓଡ଼ିଶା-ଇତିହାସ ରଚନାରେ ଏକ ବଳିଷ୍ଠ ଭିତ୍ତି ସ୍ଥାପନ କରି-ଅଛନ୍ତି । ବହୁ ତଥ୍ୟପରିପୂର୍ଣ୍ଣ 'କୋଣାର୍କ' ଓ 'ବାରବାଟୀ' ପୁସ୍ତକଦ୍ୱୟ ଇତିହାସ ଓ ସାହିତ୍ୟ ଉଭୟ ଦୃଷ୍ଟିରୁ ଅତ୍ୟନ୍ତ ଉପାଦେୟ ହୋଇଛନ୍ତି । ଅତି ନୀରସ ଇତିହାସ ମଧ୍ୟ ସାହିତ୍ୟିକ-ଭାଷାର କାଞ୍ଚନ-ସ୍ପର୍ଶରେ କିପରି ପ୍ରାଣବନ୍ତ ହୋଇଉଠେ ତାର ପ୍ରଥମ ନମୁନା ଦେଖାଇଲେ ପଣ୍ଡିତ କୃପାସିନ୍ଧୁ । ଉପରୋକ୍ତ ୫ ଜଣଙ୍କ ମଧ୍ୟରୁ, ପ୍ରକୃତ ସାହିତ୍ୟ-ସୃଷ୍ଟି ଦିଗରୁ, କେବଳ ନୀଳକଣ୍ଠ ଓ ଗୋଦାବରୀଶ ଶ୍ରେଷ୍ଠ ସାହିତ୍ୟ-ସାଧକରୂପେ ଆଜ ଏ ଦେଶରେ ଗୃହୀତ ହୋଇଛନ୍ତି । ରଚନାର ପରିମାଣ ଓ ଉପାଦେୟତା ଏ ଉଭୟ ଦିଗରୁ ଏଇ ସ୍ରଷ୍ଟାଦ୍ୱୟ ଯେଉଁ ମୌଳିକ କୃତିତ୍ୱ ଦେଖାଇଛନ୍ତି ତାହା ଏକାନ୍ତ ନମସ୍ୟ ଓ ଅବିସ୍ମରଣୀୟ । ଗତ ଅର୍ଦ୍ଧଶତାବ୍ଦୀ (୧୯୦୯-୫୯)ର ନୀଳକଣ୍ଠଙ୍କ ସାହିତ୍ୟ-ସାଧନା-କଥା ବିଚାରକଲେ ସ୍ତମ୍ଭୀଭୂତ ହେବାକୁ ପଡ଼େ । ପ୍ରଥମ ଜୀବନର

ନୀଳକଣ୍ଠ ସତ୍ୟବାଦୀ ସ୍କୁଲର ଶିକ୍ଷକ ନୀଳକଣ୍ଠରୂପେ ଦେଖାଦେଇ ଥିଲେହେଁ ଆମେ ଏଇ ନୀଳକଣ୍ଠଙ୍କଠାରେ ସଂସ୍କାରକ ଓ କବି ନୀଳକଣ୍ଠଙ୍କର ପରିଚୟ ପାଇଥାଉଁ । ବିଭିନ୍ନ ପ୍ରବନ୍ଧ, ବିଶେଷତଃ "ମୋ ଜଣ" ପ୍ରବନ୍ଧ ମାଧ୍ୟମରେ ସେ ବ୍ରାହ୍ମଣ-ସମାଜକୁ ବ୍ୟଙ୍ଗ-ବିଦ୍ରୂପର ଶାଣିତ ତରବାରିରେ ଯେଉଁ ଯେପରି ଅସ୍ତବ୍ୟସ୍ତ କରିଦେଇ ଏ ଦେଶରେ ସାମାଜିକ ସଂସ୍କାର-ଆନ୍ଦୋଳନକୁ ତ୍ୱରାନ୍ୱିତ କରି ଦେଇଥିଲେ ତାହା ଏବେ ମଧ୍ୟ ବହୁଲୋକଙ୍କ ସ୍ମୃତିରୁ ଲିଭି ଯାଇନାହିଁ । "ପ୍ରଣୟିନୀ" "ଦାସନାୟକ" ପ୍ରଭୃତି ଅନୁବାଦ ଓ 'ଖାରବେଳ" କାବ୍ୟର ଲେଖକ କବି ନୀଳକଣ୍ଠ ଏ ସାହିତ୍ୟରେ "କୋଣାର୍କ" ରଚୟିତା ନୀଳକଣ୍ଠଙ୍କର ଗୌରବ ଅର୍ଜନ କରି ନ ଥିଲେହେଁ ପ୍ରଥମୋକ୍ତ କାବ୍ୟମାନଙ୍କରେ କବିଚିତ୍ତର ସେଇ ନିଷ୍ଠା ଓ ସୃଷ୍ଟି ପ୍ରେରଣାର ଆଦି ଉନ୍ମେଷ ସ୍ପଷ୍ଟ ଅନୁଭୂତ ହୋଇଥାଏ । "କୋଣାର୍କ" ନୀଳକଣ୍ଠଙ୍କ କବି ପ୍ରତିଭାର ଏକ ସାର୍ଥକ ମାନସ-ସନ୍ତାନ । ଉଗ୍ର ଜାତୀୟତାବୋଧ, ସୃଷ୍ଟିର ମହନୀୟ ବିଳାସ, କଳ୍ପନାସନ୍ନିତ ବାସ୍ତବତାର ମଧୁର ସମନ୍ୱୟ ପ୍ରଭୃତି ଏ କାବ୍ୟର ଛନ୍ଦେଛନ୍ଦେ ବିଳସିତ ।

୧୯୨୧ ସାଲଠାରୁ ଆମେ କବି-ସଂସ୍କାରକ ନୀଳକଣ୍ଠଙ୍କୁ ରାଜନୀତି-ବିଶାରଦ ନେତା ନୀଳକଣ୍ଠ ରୂପରେ ଦେଖିବାକୁ ପାଉଁ । ଏଇ ସମୟଠାରୁ ୧୯୩୪ ସାଲ ପର୍ଯ୍ୟନ୍ତ ପ୍ରାୟ ୧୫ ବର୍ଷ କାଳ ସାହିତ୍ୟ ଜଗତରେ ତାଙ୍କର ସ୍ଥାନ କିଛି ଥିଲା ବୋଲି ମନେହୁଏ ନାହିଁ । ୧୯୩୪ ସାଲରୁ ଅର୍ଥାତ୍ "ନବଭାରତ" ମାସିକ ପତ୍ରିକା ସମ୍ପାଦନା ସମୟ ଠାରୁ ପଣ୍ଡିତ ନୀଳକଣ୍ଠଙ୍କର ସୃଷ୍ଟି ପ୍ରତିଭାକୁ ସମାଲୋଚନା କ୍ଷେତ୍ରରେ ବିନିଯୋଗ ହୋଇଥିବାର ଆମେ ଦେଖୁ । ଭଗବତ୍ ଗୀତାର ଅପୂର୍ବ ଆଲୋଚନା, ଓଡ଼ିଆ ସଭ୍ୟତା ଓ

ସଂସ୍କୃତିର ଅଭିନବ ବ୍ୟାଖ୍ୟା, ଜଗନ୍ନାଥ ଧର୍ମର ପ୍ରତିଷ୍ଠା, ସର୍ବୋପରି ଓଡ଼ିଆ ସାହିତ୍ୟର କ୍ରମପରିଣତି ବିଶ୍ଳେଷଣ—ଓଡ଼ିଆ ସମାଲୋଚନା ସାହିତ୍ୟରେ ଏମାନେ ନୀଳକଣ୍ଠଙ୍କ ଅନ୍ତର୍ଦୃଷ୍ଟି ଓ ବିଶାଳ ପାଣ୍ଡିତ୍ୟର ଯଥାର୍ଥ ପରିଚୟ ଦେଇଥାନ୍ତି । ଯୁକ୍ତିର ବଳିଷ୍ଠତା, ଭାଷାର ସଂକ୍ଷିପ୍ତତା, ଭାବପ୍ରତିଷ୍ଠାରେ ଚିରନୂତନତା, ଜ୍ଞାନର ଗଭୀରତା ତଥା ବିଷୟ ପର୍ଯ୍ୟାଲୋଚନାରେ ମୌଳିକ ଦୃଷ୍ଟିଭଙ୍ଗୀ-ଏମାନେ ନୀଳକଣ୍ଠ ସମାଲୋଚନାର ଏକ ଏକ ଅନବଦ୍ୟ ପ୍ରକୃତି । ଓଡ଼ିଆ ସମାଲୋଚନା କ୍ଷେତ୍ରରେ ଆଜି ନୀଳକଣ୍ଠ ଯଥାର୍ଥରେ ଅପ୍ରତିଦ୍ୱନ୍ଦୀ । ଯୁକ୍ତିର ପୁନରୁକ୍ତି, ଧର୍ମାଲୋଚନା ବେଳେ ଅସହନଶୀଳତା, ବିଷୟ ନିର୍ବାଚନରେ ନୂତନତାର ଅଭାବ, ଏମିତି କେତୋଟି ଦୋଷ ଦୁର୍ବଳତାକୁ ବାଦଦେଲେ ତାଙ୍କ ସମାଲୋଚନା-ସାହିତ୍ୟ ଅନ୍ୟସବୁ ଦୃଷ୍ଟିରୁ ଯେ ଏକାନ୍ତ ଉପାଦେୟ ତାହା ଅସ୍ୱୀକାର କରାଯାଇ ନପାରେ । କିନ୍ତୁ ତାଙ୍କର ଶେଷଜୀବନର ସମାଲୋଚନା ସାହିତ୍ୟ-ମୁଖୀ ନୁହେଁ, ତାହା ପୂର୍ଣ୍ଣତଃ ସଂସ୍କୃତିମୁଖୀ ।

ପଣ୍ଡିତ ଗୋଦାବରୀଶ ମିଶ୍ର ଯଥାର୍ଥତଃ ଗୀତି କବି । ଜୀବନରେ ନାଟ୍ୟକାର ହେବାକୁ ଚେଷ୍ଟା କରି ସେ ସଫଳତା ଅର୍ଜନ କରି ପାରି ନାହାନ୍ତି । ତାଙ୍କର "ମୁକୁନ୍ଦଦେବ" (୧୯୨୦) ଓ "ପୁରୁଷୋତ୍ତମ-ଦେବ"ନାଟକଦ୍ୱୟର ମଞ୍ଚଗୌରବ ବର୍ତ୍ତମାନ ନାହିଁ କହିଲେ ଚଳେ । ଏମାନଙ୍କର ସାହିତ୍ୟିକ ଗୌରବ ଏମାନଙ୍କୁ କେବଳ ଏ ସାହିତ୍ୟରେ ବଞ୍ଚାଇ ରଖି ପାରିଛି । ସମାଲୋଚନା, ପ୍ରବନ୍ଧ,ଉପନ୍ୟାସ, କ୍ଷୁଦ୍ରଗଳ୍ପରେ ସେ ହାତ ଦେଇଛନ୍ତି, କିନ୍ତୁ ତାଙ୍କର କବି ପ୍ରକୃତି ତାଙ୍କୁ କେବଳ ଗୀତିକବିତାରେ ଅମର କରି ରଖିଛି । "କଳିକା" (୧୯୨୧) ଓ "କିଶଳୟ" (୧୯୨୨) ତାଙ୍କ ପ୍ରତିଭା-ଉନ୍ମେଷର ପ୍ରାଥମିକ ସଙ୍କେତ ଦିଅନ୍ତି । ସରଳତରଳଭାବବାହୀ ଏକ ନିଷ୍କପଟ

ହୃଦ-କନ୍ଦରରୁ ନିର୍ଝରର ଅନାବିଳ ସ୍ରୋତପରି ବାହାରି ଆସି ଏଇ କବିତାମାନଙ୍କରେ ଆତ୍ମପ୍ରକାଶ କରିଛନ୍ତି । ସତ୍ୟବାଦୀର ବକୁଳ-ବନ, ସତ୍ୟବାଦୀସ୍କୁଲର ସ୍ମୃତି ଆଜି ତାଙ୍କର ସାହିତ୍ୟରେ ମୂର୍ତ୍ତିମନ୍ତ ହୋଇ ଉଠିଛନ୍ତି । "ଆଲେଖିକା" (୧୯୨୩) ଗୋଦାବରୀଶ-କବି ପ୍ରତିଭାର ସର୍ବଶ୍ରେଷ୍ଠ ପ୍ରତୀକ । ସାଧାରଣ ଘରୋଇ ଭାଷା, ସମାଜ ଓ ପରିବାର- ଏମାନଙ୍କ ସ୍ୱାଭାବିକ ପରିବେଶ ଭିତରେ ଜାତିର ଅତୀତ ଐତିହାସିକ ଶ୍ରେଷ୍ଠ ଗୌରବ କାହାଣୀ (ଏଥିରୁ କେତେକ ବାସ୍ତବ ଇତିହାସ, କେତେକ କିମ୍ବଦନ୍ତୀ) ଜାତୀୟତାର ଉଜ୍ଜ୍ୱଳ ଆଲୋକରେ ଏ କବିତା ମାନଙ୍କରେ ପ୍ରତିମନ୍ତ ହୋଇ ଉଠୁଛନ୍ତି । ଏ କାହାଣୀ ସବୁ, ପୁନର୍ବାର, ଗଭୀର କରୁଣ ମୂର୍ଚ୍ଛନାରେ ପରିସମାପ୍ତି ଲାଭ କରି ନିଜ ନିଜକୁ ଏକ ଏକ ସାର୍ଥକ ସୃଷ୍ଟିରେ ପରିଣତ କରିଛନ୍ତି । "ଆଲେଖିକା" କେତେକ ଗାଥା-କବିତାର ସମଷ୍ଟି ମାତ୍ର । ଓଡ଼ିଆ ଗୀତିକବିତା ରାଜ୍ୟରେ ଏହାହିଁ ପ୍ରଥମ ଗାଥା-କବିତା । ଗୀତି-କବିତା ସାହିତ୍ୟର ଇତିହାସରେ ନନ୍ଦକିଶୋରଙ୍କ ପରେ ଗୋଦାବରୀଶ ହେଉଛନ୍ତି ଜଣେ ଶ୍ରେଷ୍ଠ କଳାକାର । ସୃଷ୍ଟିର ମୌଳିକତା, ବିଷୟ ବସ୍ତୁ ସଂଯୋଜନାରେ ଅପୂର୍ବ ଦକ୍ଷତା, ପରିଶେଷରେ କାବ୍ୟ-କଳା ପ୍ରତିଷ୍ଠାରେ ଅସାମାନ୍ୟ ନୂତନତା ହିଁ ତାଙ୍କର କବିତା ଗୁଡ଼ିକୁ ସ୍ନିଗ୍ଧ ସୌନ୍ଦର୍ଯ୍ୟରେ ବିଭୂଷିତ କରିଦେଇଛନ୍ତି ।

ସତ୍ୟବାଦୀ-ଚିନ୍ତାଧାରା ସମୟରେ ଜନ୍ମ ଲାଭ କରିଥିଲେହେଁ ଏହା ଏକ ସାମୟିକ ସ୍ଫୁରଣର ପ୍ରତୀକ ନୁହେଁ । ଏ ସ୍ଫୁରଣର ଜ୍ୟୋତି ଯେମିତି ଚମକପ୍ରଦ ଓ ଅଭିନବ ତାର କାର୍ଯ୍ୟକାରୀଶକ୍ତି ଥିଲା ସେମିତି ବ୍ୟାପକ ଓ ଅସୀମ । ଏ ଚିନ୍ତାଧାରାର ସ୍ରଷ୍ଟାମାନେ ସସୀମରେ ଆବିର୍ଭାବ ଲାଭ କରି ଅସୀମର ଯେଉଁ ସଙ୍କେତ ଦେଇଛନ୍ତି ତାହାହିଁ

ପରବର୍ତ୍ତୀଯୁଗରେ ଏ ଦେଶର ଯୁବଚିତ୍ତରେ ଅଲଭ୍ୟ ଉନ୍ମାଦନା ସୃଷ୍ଟି କରିବାକୁ ସମର୍ଥ ହୋଇଛି ।

**ଆଧୁନିକ ଓଡ଼ିଆସାହିତ୍ୟ-ବିକାଶର ତୃତୀୟ ପର୍ଯ୍ୟାୟ (୧୯୨୧-୩୬):**—୧୯୨୧ ସାଲ ଜାନୁୟାରୀ ମାସର ପ୍ରଥମଭାଗରୁ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତ ଜାତୀୟ ମହାସମିତି ବା ଜାତୀୟ କଂଗ୍ରେସ ଅହିଂସା ଅସହଯୋଗ ମନ୍ତ୍ରରେ ଦୀକ୍ଷିତ ହୋଇ ସମଗ୍ର ଭାରତବର୍ଷରେ ବିରାଟ ଜାତୀୟତାଭାବର ବହ୍ନି ଜାଳିଦେଇଥିଲା । ଉତ୍କଳସମ୍ମିଳନୀକୁ କେନ୍ଦ୍ରକରି ଯେଉଁ ଜାତୀୟଭାବ ସୀମିତ ପରିସୀମାରେ ୧୯୨୦ସାଲ ପର୍ଯ୍ୟନ୍ତ ଏଦେଶରେ ଗତିକରୁଥିଲା ତାହା ଏଇ ସମୟରୁ ଅନ୍ୟ ଏକ ନୂତନ ରୂପରେ ଦେଖାଦେଇଥିଲା । ଗୋପବନ୍ଧୁଙ୍କ ଅକ୍ଳାନ୍ତ ପରିଶ୍ରମ ହେତୁ ଏଇ ସମୟରେ ଉତ୍କଳସମ୍ମିଳନୀ ସାମୟିକଭାବେ ଭାରତ ଜାତୀୟ ମହାସମିତି ସହିତ ସାମିଲ ହୋଇଯାଇଥିଲା । ଫଳରେ ଉତ୍କଳକୁ କେନ୍ଦ୍ରକରି ଗତିକରୁଥିବା ଜାତୀୟତାଭାବ ୧୯୨୧ ସାଲରୁ ମହାଭାରତୀୟ ରୂପରେ ରୂପାନ୍ତରିତ ହୋଇଗଲା । ୧୯୨୧ ସାଲର ପୂର୍ବ ଓ ତତ୍ପର ସମୟରେ ରଚିତ ଜାତୀୟତାଭାବ ସମ୍ବଳିତ କବିତାମାନଙ୍କ ଅନ୍ତଃ-ପ୍ରକୃତି ନିରୀକ୍ଷଣ କଲେ ଆମେ ପ୍ରଥମ ବିଭାଗରେ କେବଳ "ଉତ୍କଳ" ଓ ଦ୍ୱିତୀୟ ବିଭାଗରେ "ଭାରତ"କୁ ପ୍ରାଧାନ୍ୟ ଦିଆଯାଇଥିବାର ଦେଖିବାକୁ ପାଇବୁ । ବିଦେଶୀ ଶାସକର ଲୌହଶୃଙ୍ଖଳରୁ ଭାରତକୁ ମୁକ୍ତ କରି ସ୍ୱାଧୀନ ଭାରତର ପ୍ରାଣ ପ୍ରତିଷ୍ଠାପାଇଁ ଚାଲୁରହିଥିବା ଅହିଂସା ସତ୍ୟାଗ୍ରହ ଆନ୍ଦୋଳନ ସାହିତ୍ୟସୃଷ୍ଟି ଦିଗରେ ଯେଉଁ ବିସ୍ମୟକର ପ୍ରେରଣା ଦେଇଥିଲା ସେଥିରେ ପ୍ରଥମେ ନେତୃତ୍ୱ ନେଇଥିଲେ ସତ୍ୟବାଦୀ ବକୁଳବନ ବିହାରର ଅଧିନାୟକ ସର୍ବସ୍ୱତ୍ୟାଗୀ ଗୋପବନ୍ଧୁ ଦାସ । ଏହା ପୂର୍ବରୁ ଗୋପବନ୍ଧୁ ଦାସ

ନିଜର ଅବକାଶ ସମୟରେ ବିଭିନ୍ନ ଚନ୍ଦାଶ୍ରୟରେ ଯେଉଁ କେତୋଟି କ୍ଷୁଦ୍ରକବିତା ରଚନା କରିଥିଲେ ସେଥିରେ ଅତୀତ ଉତ୍କଳ-ଗୌରବର ଅଧଃପତନ, ନିପୀଡ଼ିତ ଜନତାପ୍ରତି ଗଭୀର ସହାନୁଭୂତି ସ୍ପଷ୍ଟ ଚିତ୍ରିତ ହୋଇଥିଲା । ୧୯୨୩-୨୪ ସାଲରେ ଏକବର୍ଷ ପାଇଁ ବିହାରପ୍ରଦେଶର ହଜାରିବାଗ ଜେଲରେ ରାଜନୈତିକବନ୍ଦୀ ହିସାବରେ କାରାଦଣ୍ଡ ଭୋଗକରୁଥିଲା ବେଳେ ସେ "ଗୋମାହାତ୍ମ୍ୟ", "ବନ୍ଦୀରଆତ୍ମକଥା", "ଧର୍ମପଦ"; "କାରାକବିତା" ଓ "ବନ୍ଧୁତତ୍ତ୍ୱ" କବିତାପୁସ୍ତକ ରଚନା କରିଥିଲେ । ଏଥିରେ ତାଙ୍କ ବ୍ୟକ୍ତିମାନସର ଏକ ଏକ ଉଜ୍ଜ୍ୱଳଚିତ୍ର ସ୍ଥାନ ପାଇଥିଲା । ଉଗ୍ର ଜାତିପ୍ରୀତିଭାବ, ଅତ୍ୟାଚାରୀ ବିଦେଶୀ ଶାସକର କୁଶାସନ ପ୍ରତି କଠୋର ବିଦ୍ରୂପ, ତଦାନୀନ୍ତନ ଜାତିର ଅଧଃପତନରେ ଗଭୀର ସହାନୁଭୂତି ପ୍ରଦର୍ଶନ, ଦେଶ ଓ ଜାତିର ସାମୂହିକ କଲ୍ୟାଣ କାମନାରେ ଆତ୍ମୋତ୍ସର୍ଗ ମନୋବୃତ୍ତି—ଏଗୁଡ଼ିକ ସେହି ଲେଖାମାନଙ୍କରେ ଉଦ୍ଦୀପ୍ତ ହୋଇ ଉଠିଛନ୍ତି । "ଧର୍ମପଦ" ଗୋପବନ୍ଧୁଙ୍କ ସୃଷ୍ଟିମାନସର ଏକ ଅମର ସନ୍ତାନ । ନିର୍ଜୀବ କିମ୍ବଦନ୍ତୀ, ଏଠି, ପ୍ରତିଭାର କାଞ୍ଚନ ସ୍ପର୍ଶରେ ନୂତନ ଏକ ସୃଷ୍ଟି-ଆଲୋକରେ ଉଦ୍‌ଭାସିତ ହୋଇ ଉଠିଛି । ଓଡ଼ିଆମାନଙ୍କମନର ଜଡ଼ତା ଭଙ୍ଗ କରିବା, ନିଜର କୂପ ମଣ୍ଡୁକତ୍ୱ ପରିହାର କରି ସମଗ୍ର ଭାରତ ତଥା ବିଶ୍ୱ ପ୍ରତି ଦୃଷ୍ଟି ଆକର୍ଷଣ କରିବା, ହୃଦୟରେ ପ୍ରଳୟର ବହ୍ନି ପ୍ରଜ୍ୱଳିତ କରି ନବପ୍ରାଣରେ ଉନ୍ମାଦିତ କରିବା—ଏହାହିଁଥିଲା ଗୋପବନ୍ଧୁ-ଜୀବନର ପ୍ରଧାନ ଲକ୍ଷ୍ୟ । ଏତଦ୍‌ବ୍ୟତୀତ ସମାଜ-ସଂସ୍କାରକ ପରି ଓଡ଼ିଆ ଗଦ୍ୟର ଥିଲେ ସେ ଜଣେ ଉପଯୁକ୍ତ ସଂସ୍କାରକ । ତାଙ୍କରି ହାତରେହିଁ ଓଡ଼ିଆ ଗଦ୍ୟ ତାର ସ୍ୱାଭାବିକ ଅବସ୍ଥାକୁ ଆସିଥିବା ପରି ମନେହୁଏ ।

ଗୋପବନ୍ଧୁଙ୍କ ସାହିତ୍ୟ-ସୃଷ୍ଟି ପରିମାଣରେ ବେଶି ନ ହେଲେହେଁ ଉପାଦେୟତାରେ ତାହା ଥିଲା ଅସୀମ । ତାଙ୍କର

ଅଗ୍ନିମୟ ବ୍ୟକ୍ତିତ୍ୱର ସାର୍ଥକ ପ୍ରଭାବ ପଡ଼ିଥିଲା ନାରୀ କବି କୁନ୍ତଳାକୁମାରୀ ଶାବତଙ୍କଠାରେ । କୁନ୍ତଳାକୁମାରୀ "ରଘୁ ଅରକ୍ଷିତ", "ନଅତୁଣ୍ଡୀ" ପ୍ରଭୃତି ଉପନ୍ୟାସରେ ଓଡ଼ିଆ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଚିତ୍ର ଅଙ୍କନ କରି ଫକୀରମୋହନଙ୍କ ପରମ୍ପରାକୁ ସୁରକ୍ଷା କରି ପାରିଥିଲେ । କିନ୍ତୁ ସେ ଥିଲେ ଯଥାର୍ଥତଃ ଗୀତିକବି । ଦେଶ-ପ୍ରୀତିର ଅଜସ୍ର ଝଙ୍କାର ଏକ ବଜ୍ର ଗମ୍ଭୀର ନିନାଦରେ ତାଙ୍କ କବିତାରେ ନିନାଦିତ ହେଉଥିବାର ଆମେ ଶୁଣିବାକୁ ପାଉଁ । ଈଶ୍ୱରପ୍ରୀତିମୂଳକ କବିତାମାନଙ୍କରେ ଜଣେ ଭକ୍ତର ସରଳ ତରଳ ଭାବରାଶି ଅନାବିଳ ଗତିରେ ଉଚ୍ଛଳ ସ୍ରୋତରେ ପ୍ରବାହିତ । ଏ କବିତାଗୁଡ଼ିକ ତାଙ୍କ ପ୍ରାଣର ଯଥାର୍ଥ ପରିଚୟ ଦିଅନ୍ତି । କିନ୍ତୁ ଛନ୍ଦର ସଂଯମ ଅଭାବରୁ ସେଇ ତରଳଭାବରାଶି କେତେକ ସ୍ଥଳରେ ଉଚ୍ଛୃଙ୍ଖଳ ହୋଇପଡ଼ିଛନ୍ତି । ତେବେ ଗୀତିକବିତାରାଜ୍ୟରେ ଗୋଦାବରୀଶଙ୍କ ପରେ ତାଙ୍କର ସ୍ଥାନ ସ୍ୱାତନ୍ତ୍ର୍ୟ ଓ ନୂତନତା ହେତୁ ନିର୍ଣ୍ଣିତ ହୋଇ ପାରେ ।

**"ପ୍ରାଚୀ-ସମିତି" ଓ ଆର୍ତ୍ତବଲ୍ଲଭ** :—୧୯୨୧-୩୫ ସାଲ ମଧ୍ୟରେ ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟର ଶୁଦ୍ଧ ସଂସ୍କରଣ-ପ୍ରକାଶନ, ଓଡ଼ିଶୀ ବିଶେଷତଃ ଗୌଡ଼ୀୟ ବୈଷ୍ଣବ ଧର୍ମ ଦର୍ଶନ ପ୍ରଖ୍ୟାପନର ନେତୃତ୍ୱ ନେଇଥିଲେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି । ୧୯୨୭ ସାଲରେ "ପ୍ରାଚୀସମିତି" ଆନୁଷ୍ଠାନିକଭାବେ ପ୍ରତିଷ୍ଠିତହୋଇଥିଲେହେଁ ଏହାର ବହୁ ପୂର୍ବରୁ ଅଧ୍ୟାପକ ଆର୍ତ୍ତବଲ୍ଲଭ କେତେକ ପୁସ୍ତକର ଶୁଦ୍ଧ ସଂସ୍କରଣ ପ୍ରକାଶ କରି ଏଦେଶର ଲୋକଙ୍କ ଦୃଷ୍ଟି ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ କରିଥିଲେ । "ପ୍ରାଚୀସମିତି"ର ପ୍ରାଣ ପ୍ରତିଷ୍ଠାତା ଓ ତାର

ଯଥାର୍ଥ ପରିପୂରକ ଆର୍ତ୍ତବଲ୍ଲଭଙ୍କ ଗଭୀର ପାଣ୍ଡିତ୍ୟ, ନିରଳସ ଅଧ୍ୟବସାୟ ଓ ନିରନ୍ତର ସାଧନା ହେତୁ ମଧ୍ୟଯୁଗୀୟ ସାହିତ୍ୟର ପ୍ରକୃତ ରୂପ ଓ ତାର ଅନୁଶୀଳନ ପାଇଁ ପ୍ରକୃଷ୍ଟ ମାର୍ଗ ଏ ଦେଶର ଲୋକେ ଲାଭ କରିଥିଲେ । କରୁଣାକର କର, ଲକ୍ଷ୍ମୀକାନ୍ତ ଚୌଧୁରୀ, ଘନଶ୍ୟାମ ଦାଶ, ସୁଧାକର ପଟ୍ଟନାୟକ; ସ୍ୱଚ୍ଛନ୍ଦ ଚରଣ ପଟ୍ଟନାୟକ ପ୍ରଭୃତି ଗବେଷକ,ସାହିତ୍ୟିକ ଓ ଐତିହାସିକ ଲେଖକମାନଙ୍କ ଅକୁଣ୍ଠ ସହଯୋଗିତାରେ ଆର୍ତ୍ତବଲ୍ଲଭ ଯେଉଁ ଗବେଷଣା-ସମାଲୋଚନାର ଭିତ୍ତି ପ୍ରତିଷ୍ଠା କଲେ ତାହାହିଁ ପରବର୍ତ୍ତୀ ସାହିତ୍ୟସମୀକ୍ଷକମାନଙ୍କୁ ଅପୂର୍ବ ଉତ୍ସାହ ଯୋଗାଇଥିଲା ।

**ଓଡ଼ିଆ ସାହିତ୍ୟରେ "ସବୁଜ":—**ବଙ୍ଗକବି ରବୀନ୍ଦ୍ରନାଥ ଠାକୁର ୧୯୧୩ ସାଲରେ ନୋବେଲ ପୁରସ୍କାର ଲାଭ କରିଥିଲେ । ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮) ହେତୁ ରବୀନ୍ଦ୍ର ସାହିତ୍ୟ ପ୍ରତି ଭାରତୀୟ ଲେଖକମାନେ ବିଶେଷ ଭାବେ ଆକୃଷ୍ଟ ହୋଇ ପାରି ନଥିଲେ । ୧୯୨୦ ସାଲ ପରେ ରବୀନ୍ଦ୍ର ସାହିତ୍ୟ ବିଶେଷତଃ ତାଙ୍କ "ଗୀତାଞ୍ଜଳି"ର ସାହିତ୍ୟିକ ଗୌରବ ଓ ରହସ୍ୟବାଦ ଏମାନଙ୍କ ଚକ୍ଷୁରେ ଅନୁକରଣୀୟ ହୋଇ ପଡ଼ିଥିଲା । ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଥିବା ଲେଖକମାନଙ୍କ ପରି ଓଡ଼ିଶାର କେତେ ଜଣ କଲେଜ ଛାତ୍ର ରବିଠାକୁରଙ୍କ ଦ୍ୱାରା ପ୍ରଭାବିତ ହେବାରେ ବୈଚିତ୍ର୍ୟ କିଛି ନାହିଁ । ଅନ୍ନଦାଶଙ୍କର ରାୟ, ଶରତଚନ୍ଦ୍ର ମୁଖର୍ଜୀ, କାଳିନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ ଓ ହରିହର ମହାପାତ୍ର—ଏ ପାଞ୍ଚଜଣ ବନ୍ଧୁ ଶାନ୍ତିନିକେତନର "ସବୁଜପତ୍ର"ର ଆଦର୍ଶରେ ଅନୁପ୍ରାଣିତ ହୋଇ ଏକ ସ୍ୱତନ୍ତ୍ର ସାହିତ୍ୟ-ଧାରାର ସୂତ୍ରପାତ କଲେ । ଏମାନଙ୍କର କେତୋଟି କବିତା ପ୍ରଥମେ ୧୯୩୧

ସାଲରେ "ସବୁଜ କବିତା" ପୁସ୍ତକରେ ସଂଗୃହୀତ ତଥା ପ୍ରକାଶିତ ହୋଇଥିଲା । "ସବୁଜସମିତି" ନାମକ ଏକ ସାଂସ୍କୃତିକ ସଂସ୍ଥା ପରବର୍ତ୍ତୀ ସମୟରେ ସ୍ଥାପନ କରି ଏମାନେ ତାର ମୁଖପତ୍ର ସ୍ୱରୂପ "ଯୁଗବାଣୀ" ନାମକ ଗୋଟିଏ ମାସିକ ପତ୍ରିକା ପରିଚାଳନା କଲେ । ଏଇହେତୁ ଏ ଦେଶର ଲୋକେ ସାଧାରଣତଃ ସେମାନଙ୍କୁ "ସବୁଜକବି" ଓ ସେମାନଙ୍କ ସାହିତ୍ୟକୁ "ସବୁଜ ସାହିତ୍ୟ" ବୋଲି କହିଥାନ୍ତି । ଏମାନଙ୍କ ମଧ୍ୟରୁ କେବଳ ଦୁଇଜଣ ଲେଖକ, କାଳିନ୍ଦୀ ଓ ବୈକୁଣ୍ଠ ୧୯୩୦ ସାଲ ପରେ ଆଜ ପର୍ଯ୍ୟନ୍ତ ମଧ୍ୟ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରି ଆସୁଛନ୍ତି ।

ଗୀତିକବିତା, ନାଟକ, ଉପନ୍ୟାସ, କ୍ଷୁଦ୍ରଗଳ୍ପ, ଗବେଷଣାତ୍ମକ ସମାଲୋଚନା, ଭ୍ରମଣ-ସାହିତ୍ୟ—ସବୁଜ ସାହିତ୍ୟରେ ଥିବା ଏ ପ୍ରତ୍ୟେକ ବିଭାଗର ସାହିତ୍ୟିକ ଗୌରବ ଅନୁଶୀଳନ କଲେ ଏକ ଚଳଚଞ୍ଚଳ, ଯୁବଚିତ୍ତର ସୃଷ୍ଟିଶକ୍ତି ଓ ତାର ଅମେୟ ଆତ୍ମ-ପ୍ରକାଶ-ଅଭିଳାଷ ଆମେ ସ୍ୱତଃ ଲକ୍ଷ୍ୟ କରିପାରିବୁଁ । ଅନ୍ନଦାଶଙ୍କରଙ୍କ "ସମର ଓ ସାହିତ୍ୟ", "ବସନ୍ତଗାଥା" ଓ "ପଦ୍ମପାଖୁଡ଼ା"ର ସମାଲୋଚନା, କାଳନ୍ଦୀଚରଣଙ୍କ "ମଥୁରାମଙ୍ଗଳ"ର ଦୀର୍ଘ ଆଲୋଚନା ଏମାନଙ୍କ ସ୍ୱଳ୍ପ ଜୀବନରେ ଲିଖିତ ହୋଇଥିଲେହେଁ ଏଥିରେ ଥିବା ଆଲୋଚନାର ଦୃଷ୍ଟିଭଙ୍ଗୀ, ବିଷୟ-ଆହରଣ ଓ ପରିପ୍ରେକ୍ଷୀରେ ଚମତ୍କାରିତା, ବିଶେଷତଃ ମଥୁରାମଙ୍ଗଳ ଆଲୋଚନାରେ ଗଭୀର ଗବେଷଣା ମନୋବୃତ୍ତି ଯଥାର୍ଥ ପ୍ରଶଂସନୀୟ । ବୈକୁଣ୍ଠନାଥଙ୍କ ଏକମାତ୍ର ନାଟକ "ମୁକ୍ତପଥେ"ରେ ନାରୀ-ସ୍ୱାଧୀନତାର ଜୟପତାକା ଉତ୍ତୋଳିତ ହୋଇଥିବାର ଦେଖିବାକୁ ମିଳେ । ବିଷୟବସ୍ତୁର ନିର୍ବାଚନ ଓ ପରିବେଷଣରେ ନୂତନତା, ଗଳ୍ପର ଆଙ୍ଗିକ ବିଭବର ଚମତ୍କାରିତା, ବିଷୟବସ୍ତୁର ସ୍ୱାଭାବିକତା ପ୍ରଭୃତି ଗଳ୍ପ-ବୈଶିଷ୍ଟ୍ୟଗୁଡ଼ିକ

ଫକୀରମୋହନଙ୍କ ପରେ ପ୍ରଥମେ କାଳନ୍ଦୀଚରଣଙ୍କ ଲେଖାରେ ପରିଲକ୍ଷିତ ହୁଏ । ୧୯୨୦ ସାଲ ପୂର୍ବ ଓଡ଼ିଆ କ୍ଷୁଦ୍ରଗଳ୍ପମାନଙ୍କଠାରୁ ଏମାନେ କେତେକ ନୂତନ ବିଭବରେ ଯେ ବିଭୂଷିତ ତାହା ଅବିସମ୍ବାଦିତ ସତ୍ୟ । ଅନ୍ନଦା ଶଙ୍କରଙ୍କ "ବିଲାତ ଚିଠି" ଏକାନ୍ତ ଉପଭୋଗ୍ୟ ଓ ପଠନ ସୁଖକର । ନ' ଜଣ ଲେଖକ ଲେଖିକାଙ୍କ ମିଳିତ ଉଦ୍ୟମରେ ଗଢ଼ି ଉଠିଥିବା "ବାସନ୍ତୀ" ଉପନ୍ୟାସ ଏକ ଅଭିନବ ଉଦ୍ୟମ । ସମାଜର କୁସଂସ୍କାର ବିରୁଦ୍ଧରେ ଜୟଯାତ୍ରା ଘୋଷଣା କରିବା ଥିଲା ଏମାନଙ୍କର ଲକ୍ଷ୍ୟ । କିନ୍ତୁ ୧୯୨୦ ସାଲ ପରେ କୁସଂସ୍କାର ଦୂର କରିବା ମନୋବୃତ୍ତିଟି ଲେଖକ ଚିତ୍ତରେ ଅତି ଅପ୍ରଧାନ ଥିଲା । ପୁନଶ୍ଚ ସେତେବେଳେ ଏ ସମସ୍ୟା ଅତିଶୟ ଜଟିଳ ନଥିଲା । କିନ୍ତୁ ଏକ ଦୁର୍ବଳ ସାମାଜିକ ସମସ୍ୟାକୁ କେନ୍ଦ୍ର କରି ଚରିତ୍ର ଚିତ୍ରଣର ମନୋହର ଆଲେଖ୍ୟ ପ୍ରଦାନ କରିବା ଥିଲା ଏମାନଙ୍କର ଲକ୍ଷ୍ୟ । ଉପନ୍ୟାସ ସୃଷ୍ଟିରେ ଏ ଲକ୍ଷ୍ୟ ଏମାନଙ୍କ ପୂର୍ବ ଉପନ୍ୟାସରେ ନଥିଲା କହିଲେ ଚଳେ । ପ୍ରାକ୍‌ବାସନ୍ତୀ ଯୁଗରେ ଘଟଣା ଉପରେହିଁ ଲେଖକମାନଙ୍କର ଦୃଷ୍ଟି ପଡ଼ୁଥିଲା । ପରସ୍ପର ବିରୁଦ୍ଧାତ୍ମକ ଘଟଣାମାନଙ୍କ ଘାତ-ପ୍ରତିଘାତରେ ଚରିତ୍ରମାନଙ୍କ ମାନସିକ ଦ୍ୱନ୍ଦ୍ୱ ବିଚିତ୍ର ରୂପରେ ଫୁଟାଇବା ଶ୍ରେଷ୍ଠ କଳାକାରର ପ୍ରକୃତ ନିଦର୍ଶନ—ସୃଷ୍ଟିର ଏ ଆଦର୍ଶ ଓଡ଼ିଆ ସାହିତ୍ୟରେ ପ୍ରଥମେହିଁ "ବାସନ୍ତୀ" ପ୍ରତିଷ୍ଠା କରିଥିଲା । ଏ ଗୌରବର ପ୍ରଥମ ଅଧିକାରୀ ହେଉଛନ୍ତି "ବାସନ୍ତୀ"ର ଲେଖକ ଲେଖିକାଗଣ ।

ଆଙ୍ଗିକ-ଆତ୍ମିକ ରୂପବିଭବ ଓ ପରିମାଣଗତ ଆକାର ହେତୁ ସବୁଜ ସାହିତ୍ୟର ଗୀତି-କବିତା ସାଧାରଣ ପାଠକର ଦୃଷ୍ଟି

ଆକର୍ଷଣ କରଥାଏ । କନ୍ତୁ ଅନ୍ନଦା ଶଙ୍କରଙ୍କ ୭୮୭ଟି କବତାର ଅନ୍ତଃପ୍ରକୃତ ପର୍ଯ୍ୟାଲୋଚନା କଲେ ଏ ସମଗ୍ର ଗୀତ କବତା ଉପରେ ଗୋଟାଏ ସ୍ଥୂଳ ଧାରଣା ହୋଇଯାଏ । ପ୍ରତଷ୍ଠିତ ସାମାଜକ ସଂସ୍ଥା ବରୁଦ୍ଧରେ ମସୀଅସ୍ତ୍ର ଉତ୍ତୋଳନ, ପାର୍ଥିବ ଜଗତର ସାଧାରଣ ମାଟିଠାରୁ ନଜକୁ ଦୂରରେ ରଖି ସୁଦୂର ପରୀ ରାଜ୍ୟରେ ବଚରଣ କରବାର ମନୋବୃତ୍ତି ପୋଷଣ, ସାଧାରଣ ପ୍ରେମ ଅପେକ୍ଷା ଏକ ବୌଦ୍ଧିକ ଜ୍ଞାନମୟ ସୌନ୍ଦର୍ଯ୍ୟମୂଳକ ପ୍ରେମ ଉପରେ ନସ୍ଥାପର ଐକାନ୍ତକତା ପ୍ରକାଶ, ଅତ ସାଧାରଣ ବଷୟକୁ ପ୍ରକାଶଭଙ୍ଗୀ ଓ ଭାଷା ମାଧ୍ୟମରେ ଅତ ଅସାଧାରଣ ରୂପଦାନ, ବଭନ୍ନ ଛନ୍ଦର ପରୀକ୍ଷା, ଛନ୍ଦମୟ ଭାଷାକୁ ଦ୍ରୁତଗତ ଛନ୍ଦରେ ରୂପ ଦେବାର ପ୍ରୟାସରେ ସ୍ଥଳବଶେଷରେ ଓଡ଼ିଆ ଭାଷାର କୌଳନ୍ୟ ବନାଶ, ଏମିତ କେତୋଟି ବଷୟ ଏ କବତାମାନଙ୍କରେ ଦେଖିବାକୁ ମିଳେ । "ସବୁଜ"ହିଁ ସତେଜ ସ୍ପନ୍ଦନ ଓ ବଳଷ୍ଠ ଜୀବନର ଦ୍ୟୋତକ । "ସବୁଜ"-ହୀନତା ପ୍ରାଣ-ଶୂନ୍ୟତାର ପରଚୟକ, ନୂତନ ସୃଷ୍ଟି ପାଇଁ ଅନ୍ତରରେ ଅନନ୍ତ ଅଭିଳାଷ ପୋଷଣ, ଆବରଣର ଆଙ୍ଗିକ ପରବେଶ ଭିତରେ ଯୁବଚତ୍ତର ପରପୂର୍ଣ୍ଣ ଅଭି-ବ୍ୟକ୍ତ ପ୍ରତଷ୍ଠା—ଏହାହିଁ "ସବୁଜ" ଓ "ସବୁଜ ସାହତ୍ୟ"ର ବଶିଷ୍ଟ ପରଚୟ । ଏ ସାହତ୍ୟର ସ୍ଥିତକାଳ ସାମାନ୍ୟ ଦଶ ବର୍ଷ ହେଲେହେଁ ଓଡ଼ିଆ ଗୀତ କବତା ରାଜ୍ୟରେ ଏହାର ପଦନକ୍ଷେପ ଅବାନ୍ତର, ଅହେତୁକ, ଅସ୍ପୃହଣୀୟ କମ୍ବା ଅକଲ୍ୟାଣକର ନୁହେଁ । କେତୋଟି କବତାରେ କେତୋଟି ଅବାଞ୍ଛିତ ଉପାଦାନର ସମାବେଶ ଦେଖି ଏ ସମଗ୍ର ସାହତ୍ୟକୁ ଅସ୍ୱୀକାର କରଦେବା ଆମ ପକ୍ଷରେ ଶୋଭନୀୟ ନୁହେ । ଓଡ଼ିଆ ଗୀତ କବତାର ଯେଉଁ ମୂଳଭିତ୍ତି ପ୍ରଥମେ ମଧୁସୂଦନ ପ୍ରତଷ୍ଠା କରଥିଲେ ତାହା ନନ୍ଦକଶୋର, ମଦନମୋହନ ପଛନାୟକ,

ପଦ୍ମଚରଣ, ଗୋଦାବରୀଶ ପ୍ରଭୃତି କବିମାନଙ୍କ ଦ୍ୱାରା ଯଥେଷ୍ଟ ସୁଦୃଢ଼ ହୋଇ ପାରିଥିଲା । ହେଲେହେଁ ଏ ମୂଳ ଭିତ୍ତିର ଆଙ୍ଗିକ ରୂପ ବୈଚିତ୍ର୍ୟ ୧୯୨୦ ସାଲ ପର୍ଯ୍ୟନ୍ତ କେହି ସଚେତନ ଭାବରେ କରିଥିଲା ପରି ମନେହୁଏ ନାହିଁ । କ୍ଷୁଦ୍ର କବିତାରେ ଏ ରୂପ-ବୈଚିତ୍ର୍ୟ ସମ୍ପାଦନ "ସବୁଜ" କବିମାନଙ୍କର ଏକ ଅମଳିନ କୀର୍ତ୍ତି ।

"ସବୁଜ କବି" ଓ "ସବୁଜ ସାହିତ୍ୟ"ର ରୂପ ପ୍ରାପ୍ତି ୧୯୩୦ ସାଲ ପରେ ପରିବର୍ତ୍ତିତ ହୋଇଯାଇଥିଲା । ୧୯୩୦ ସାଲ ପରେ ଓଡ଼ିଆ ସାହିତ୍ୟରେ ଯେଉଁ ନବ ଭାବଧାରା ଖେଳି ଯାଇଥିଲା ସବୁଜ କବିମାନେ ନିଜ ନିଜକୁ ସେଥିରେ ନିଚିହ୍ନ କରି ଦେଇଥିଲେ । ତେଣୁ ଏଇ ସମୟ ପରଠାରୁ ଏମାନଙ୍କୁ କିମ୍ବା ଏମାନଙ୍କ ଲେଖାକୁ "ସବୁଜ" ନାମରେ ନାମିତ କରିବାରେ କିଛି ଯୌକ୍ତିକତା ନାହିଁ ।

କାଳନ୍ଦୀଚରଣଙ୍କ "ମାଟିର ମଣିଷ" (୧୯୩୧) ଉପନ୍ୟାସ ଭିତରେ "ସବୁଜ କବିଙ୍କ" ଏଇ ମାନସିକ ପରିବର୍ତ୍ତନ ସ୍ପଷ୍ଟ ଲକ୍ଷ୍ୟ କରାଯାଇପାରେ । "ସବୁଜକବି"ମାନେ ଏଇ ମାଟିର ପାଣି, ପବନ, ମଣିଷକୁ ପରିତ୍ୟାଗ କରି ଏକ ମଧୁମୟ ପରୀରାଜ୍ୟରେ ବିଚରଣ କରନ୍ତି—ଏପରି ଅଭିମତ ଦେଉଥିବା ଲୋକମାନଙ୍କୁ ଯେପରି ମନେହୁଏ, କାଳନ୍ଦୀଚରଣ ମାଟିର ଯଥାର୍ଥ ସନ୍ତାନକୁ ଚିହ୍ନଣାଇଛନ୍ତି "ମାଟିର ମଣିଷ" ଉପହାର ଦେଇଛନ୍ତି । ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ବରଜୁ ହେଉଛି ଏ ଉପନ୍ୟାସର ପ୍ରଧାନ ଚରିତ୍ର । ଗାନ୍ଧୀ-ଆନ୍ଦୋଳନକୁ କେନ୍ଦ୍ରକରି ଏ ଦେଶରେ ସମସ୍ତକ୍ରମେ ଯେଉଁ ଗାନ୍ଧୀ-ସାହିତ୍ୟ ଗଢ଼ି ଉଠିଛି ସେଥି ମଧ୍ୟରେ

ଆଲୋଚ୍ୟ ଉପନ୍ୟାସ ହେଉଛି ଏକ ସାର୍ଥକ ସୃଷ୍ଟି । ଫକୀର-ମୋହନଙ୍କ ଉପନ୍ୟାସ ପରେ "ମାଟିର ମଣିଷ"ହିଁ ପଲ୍ଲୀ ଜୀବନ ଚିତ୍ରଣ କରିବାରେ ସଫଳତା ଅର୍ଜନ କରିଛି । "ମୁକ୍ତା ଗଡର କ୍ଷୁଧା", "ଅମରଚିତା" କାଳନ୍ଦୀଚରଣଙ୍କ ଏକ ଏକ ବିଶିଷ୍ଟ ଉପନ୍ୟାସ ।

**କବି ମାୟାଧର ମାନସିଂହ**—୧୯୨୧-୩୫ ସାଲ ଭିତରେ କବି ମାନସିଂହଙ୍କ କବି-ପ୍ରତିଭାର ଉନ୍ମେଷ ଓ ବିକାଶ ପରିଦୃଷ୍ଟ ହୋଇଥିଲା । ୧୯୨୬ ସାଲରୁ ଆଜିପର୍ଯ୍ୟନ୍ତ ମାନସିଂହ ଯେଉଁ ସାହିତ୍ୟ ସୃଷ୍ଟିକରି ଆସିଛନ୍ତି ତାର ପରିମାଣ ଓ ରୂପବୈଚିତ୍ର୍ୟ ଉଭୟେ ପ୍ରଣିଧାନଯୋଗ୍ୟ । ଗୀତିକବିତା, କାବ୍ୟ, ନାଟକ, ଗଳ୍ପ, ଭ୍ରମଣ ସାହିତ୍ୟ, ସମାଲୋଚନା, ଜ୍ଞାନକୋଷ, ଉପନ୍ୟାସ—ସାହିତ୍ୟର ବିଭିନ୍ନ ବିଭାଗ ଏକ ଏକ ବିଶିଷ୍ଟ ରୂପବିଭବରେ ଏହାଙ୍କ ହାତରେ ଗରୀୟାନ ହୋଇ ଉଠିଛନ୍ତି । ଗଳ୍ପ କିମ୍ବା ଉପନ୍ୟାସ ରଚନାରେ ତାଙ୍କର କୌଣସି କୃତିତ୍ୱ ନାହିଁ । ତାଙ୍କ ନାଟକଗୁଡିକ ଜାତୀୟତାବୋଧ ଉପରେ ପ୍ରତିଷ୍ଠିତ ହୋଇଥିଲେ ସୁଦ୍ଧା ବର୍ତ୍ତମାନ ସେମାନଙ୍କର ମଞ୍ଚମୂଲ୍ୟ କିଛି ଅଛି ବୋଲି ମନେହୁଏ ନାହିଁ । ତାଙ୍କର କାବ୍ୟ "କମଳାୟନ" କୌଣସି ସାର୍ଥକ ସୃଷ୍ଟିର ପରିଚୟ ଦିଏ ନାହିଁ । ବିଷୟବସ୍ତୁର ନୂତନତାହିଁ ଏହାର ଗୌରବକୁ କେତେକ ପରିମାଣରେ ରକ୍ଷା କରିଛି । ମାନସିଂହଙ୍କ ସାହିତ୍ୟ-ସମାଲୋଚନା ଓଡ଼ିଆ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ବସିଛି । ଅନ୍ୟ କବିଙ୍କ ସୃଷ୍ଟି-ସୌନ୍ଦର୍ଯ୍ୟ ତାଙ୍କ କବି ଚିତ୍ତରେ ଯେପରି ଆଲୋଡନ ସୃଷ୍ଟି କରିଛି ଅତୀବ ମୁଗ୍‌ଧକର ଭାଷାରେ ଓ ନାଟକ ଚିତ୍ତରେ ସେ ତାହା ପ୍ରକାଶ କରିଛନ୍ତି । ଏ ବିଚାର-ବୋଧ ତାଙ୍କର ସମ୍ପୂର୍ଣ୍ଣ ନିଜସ୍ୱ ଓ ବ୍ୟକ୍ତିଗତ; ତେଣୁ କେତେକ ସ୍ଥଳରେ ଏକଦେଶଦର୍ଶୀ

ଅଭିମତ ସ୍ଥାନ ପାଇପାରିଛି । ଗୀତିକବିତା ହେଉଛି ମାନସିଂହଙ୍କ କବି-ପ୍ରତିଭା ସ୍ଫୁରଣର ଯଥାର୍ଥ ମାଧ୍ୟମ । ପ୍ରାଥମିକ ଜୀବନରେ ସେ ଏହି ବିଭାଗରେ ହାତଦେଇ ଅମର ଯଶର ଅଧିକାରୀ ହୋଇ ପାରିଛନ୍ତି । ଜାତୀୟତାଭାବ ଓ ପ୍ରେମ ତାଙ୍କର ଅଧିକାଂଶ ଶ୍ରେଷ୍ଠ ଗୀତିକବିତାର ପ୍ରାଣପିଣ୍ଡ । ନୂତନ ଛନ୍ଦ ଯୋଜନାର ମନୋଜ୍ଞ ପରିବେଶ ଭିତରେ ତାଙ୍କରି ଗଭୀର ଜାତୀୟତାଭାବ ପ୍ରତିଷ୍ଠିତ । ପ୍ରେମମୂଳକ କବିତାଗୁଡ଼ିକରେ ପାର୍ଥିବଜଗତର ନରନାରୀଙ୍କ ସାଧାରଣ ପ୍ରେମ ପ୍ରଧାନସ୍ଥାନ ଲାଭ କରିଛି । ଏ ପ୍ରେମରେ ନାହିଁ ବୈଷ୍ଣବ କବିମାନଙ୍କ ପ୍ରେମ ପରି ବିଶିଷ୍ଟ ଦର୍ଶନ କିମ୍ବା ମଧୁବାବୁଙ୍କ ପ୍ରେମ ପରି ସୁଉଚ୍ଚ ଆଦର୍ଶ । କିନ୍ତୁ ଏଥିରେ ଯାହା କିଛି ଅଛି ତାହା ହେଉଛି ଯଥାର୍ଥ କବିତା ଓ ଅନୁଭୂତି । ଚଳଚଞ୍ଚଳଛନ୍ଦ-ଗତିର ତାଳେ ତାଳେ ନୃତ୍ୟମୁଖର ହୋଇ ଉଠିଛି ସେଇ ସାଧାରଣ ପ୍ରେମର ବାସ୍ତବ ଅନୁଭୂତି । ମାନସିଂହଙ୍କ ପ୍ରଥମ ସାରସ୍ୱତ ଅବଦାନ "ଧୂପ" (୧୯୩୧)ହିଁ ପ୍ରେମମୂଳକ ଓଡ଼ିଆ ଗୀତିକବିତାରାଜ୍ୟରେ ଏକ ସାର୍ଥକ ରସବାଣୀର ଅନବଦ୍ୟ ନୈବେଦ୍ୟ । "ସାଧବଝିଅ" (୧୯୨୯) କବିତାରେ ପ୍ରେମର ଯେଉଁ ଅଭିନବ ପ୍ରକାଶଭଙ୍ଗୀ ନୂତନଛନ୍ଦର ନୂପୁରନିକ୍ୱଣରେ ମହାସ୍ପନ୍ଦନ ହୋଇ ଉଠିଥିଲା ସେଇ ପ୍ରକାଶବୈଚିତ୍ର୍ୟ ପରିପୂର୍ଣ୍ଣତା ପାଇଛି "ଉପେକ୍ଷିତା" (୧୯୨୮), "ପୁଷ୍ପିତା" ନାଟିକା (୧୯୩୦), "ଶୁଭଦୃଷ୍ଟି" କବିତା (୧୯୩୦), "ପୂଜାରିଣୀ" (୧୯୩୨) କବିତାପୁସ୍ତକ, ବିଶେଷତଃ "କୋଣାର୍କର ଲାସ୍ୟଲୀଳା" (୧୯୩୫) କବିତାରେ । ଏଥିରୁ ଶେଷୋକ୍ତ କବିତା "କୋଣାର୍କର ଲାସ୍ୟଲୀଳା"ର ସୃଷ୍ଟି ପରିକଳ୍ପନା, ସଙ୍ଗୀତ ଓ ଛନ୍ଦସଂଯୋଜନା, ରସ ଓ ରୂପ ପ୍ରକାଶରେ ଅଭିନବ ବ୍ୟଞ୍ଜନା, ଓଡ଼ିଆ ଗୀତିକବିତା-ରାଜ୍ୟରେ ଏକାନ୍ତ ବିସ୍ମୟକର । କବିକଳ୍ପନାର

ମହମାପ୍ଟ ଶକ୍ତିରେ କୋଣାର୍କର ପ୍ରାଣହୀନ ପାଷାଣ ଗାତ୍ରରେ ଜଡ଼ ସଜୀବ ପ୍ରସ୍ତରମୂର୍ତ୍ତି ସବୁ ହୋଇଉଠୁଛନ୍ତି ଯେପରି ନୃତ୍ୟଚଞ୍ଚଳା, ଭାବବହ୍ୱଳା, ପ୍ରାଣପରିପୂର୍ଣ୍ଣା । କଳାପ୍ରାଣ ଓଡ଼ିଆଜାତିର ଶିଳ୍ପଚୂଡ଼ାମଣି କୋଣାର୍କ ମନ୍ଦିର, ସତ୍ୟବାଦୀ ମଞ୍ଜୁବକୁଳବନର ଅଧିଦେବତା ସାକ୍ଷୀଗୋପାଳ, ନୌଯାତ୍ରାପ୍ରିୟ ଓଡ଼ିଆ ସାଧବର ଅପୂର୍ବ ଜୀବନ କାହାଣୀ, ପ୍ରଭୃତି ପୁରାଣ, କିଂବଦନ୍ତୀର ବିଷୟବସ୍ତୁ ଭିତରେ ଫୁଟି ଉଠିଛି ମାନସିଂହ କବିପ୍ରତିଭାର ଅମର ସୃଷ୍ଟି ସୌନ୍ଦର୍ଯ୍ୟ । ପ୍ରାଚୀନହିଁ ନୂତନ ରୂପାଲୋକରେ, ଅନବଦ୍ୟ କବିତା-ବିଭବରେ ହୋଇ ଉଠିଛି ଉଦ୍ଭାସିତ । ଏ କବିତାମାନଙ୍କରେ ବିଷୟବସ୍ତୁ ଅପେକ୍ଷା ପ୍ରେମଚିତ୍ରଣହିଁ ପ୍ରଧାନ । କାବ୍ୟର ଏ ଆଙ୍ଗିକ ରୂପ ପରୀକ୍ଷା 'ହେମା', 'କମଳାୟନ', 'ବୁଦ୍ଧ' ପ୍ରଭୃତି ରଚନାରେ ଅନ୍ୟ ଏକ ଏକ ନୂତନ ବିଷୟବସ୍ତୁ ଓ ଛନ୍ଦର ଆଶ୍ରୟରେ ସମ୍ପାଦିତ ହୋଇଛି ।

**ସମସାମୟିକ ସାହିତ୍ୟସୃଷ୍ଟି:**—୧୯୨୧-୩୬ ସାଲ ଭିତରେ "ବାରୁଣୀ" (୧୯୨୭) କୁ କେନ୍ଦ୍ରକରି ବୈଷ୍ଣବଚରଣ ଦାସ, ଉପେନ୍ଦ୍ରକିଶୋର ଦାସ, ନିକୁଞ୍ଜକିଶୋର ଦାସଙ୍କ ପରି ଲେଖକ-ଗଣ; ନାଟ୍ୟକାର ଅଶ୍ୱିନୀକୁମାର ଘୋଷ, ପଲ୍ଲୀକବି ସଚ୍ଚିଦାନନ୍ଦ ରାଉତରାୟ, ଶୁଦ୍ଧରସିକ ରାଧାମୋହନ ଗଡ଼ନାୟକ, ପ୍ରାବନ୍ଧିକ କୁଞ୍ଜମଣି ଦାସ, ରତ୍ନାକର ପତି, ବିପିନବିହାରୀ ରାୟ, ଜଗଦାନନ୍ଦ ମହାନ୍ତି ( ମହାଯାତ୍ରାର ସର୍ବଶ୍ରେଷ୍ଠ ସମାଲୋଚକ ) ପ୍ରଭୃତି କବି ଓ ଲେଖକମାନଙ୍କ ସୃଷ୍ଟି-ପ୍ରତିଭାର ଉନ୍ମେଷ ଓ ବିକାଶ ସଂଶାଧିତ ହୋଇଥିଲା । "ବାରୁଣୀ" ନିଜର ଅସ୍ଥାୟୀ ଜୀବନ କାଳମଧ୍ୟରେ ଖାଣ୍ଟି ଓଡ଼ିଆଭାଷା, ଓଡ଼ିଆ ପ୍ରାଣର ଚିତ୍ର ଦେବାରେ କୃତିତ୍ୱ ଅର୍ଜ୍ଜନ କରିଥିଲା । ଗୋଦାବରୀଶ ଙ୍କ ପରେ ନାଟକ ଜଗତରେ ଅଶ୍ୱିନୀକୁମାର

ପୌରାଣିକ ଓ କିମ୍ବଦନ୍ତୀମୂଳକ ବିଭିନ୍ନ ନାଟକ ରଚନା କରି ଏ ଜାତିର ପ୍ରାଣରେ ଯେଉଁ ଅମୀୟ ନାଟ୍ୟରସ ଢାଳଦେଇଥିଲେ ତାହା ଏକାନ୍ତ ସ୍ମରଣୀୟ । ନାଟକର ଆଙ୍ଗିକ ରୂପ-ବିଭବ ତଥା ଆତ୍ମିକ ରସ-ସମ୍ପଦ ସଂରକ୍ଷଣ କରି ସେ ଯେଉଁ କେତୋଟି ନାଟକ ରଚନାରେ ପାରଦର୍ଶିତା ଲାଭ କରିଛନ୍ତି ସେଥିରୁ "କୋଣାର୍କ" ହେଉଛି ଅନ୍ୟତମ । ସଚ୍ଚିଦାନନ୍ଦଙ୍କ ପାଥେୟ (୧୯୩୧) ଓ "ପୂର୍ଣ୍ଣିମା" (୧୯୩୨) ସବୁଜ ସାହିତ୍ୟର ଆଦର୍ଶରେ ରଚିତ । "ପଲ୍ଲୀଚିତ୍ର"ରେ ତାଙ୍କର ସାର୍ଥକ କବିପ୍ରତିଭାର ପରିଚୟ ମିଳେ । ସେଥିରେଥିବା "ପଲ୍ଲୀଶ୍ରୀ" (୧୯୩୪) କବିତାଟିରେ ଓଡ଼ିଆ ଗଣଜୀବନର ଯେଉଁ ନିଖୁଣ ଚିତ୍ର ଅଙ୍କିତ ହୋଇଛି ତାହାର କାବ୍ୟିକ ପ୍ରକାଶଭଙ୍ଗୀ, ସୁମଧୁର ଅଳଙ୍କାର ସଂଯୋଜନା ଓ ବାସ୍ତବଜୀବନ କାହାଣୀ ଅତୀବ ପ୍ରାଣସ୍ପର୍ଶୀ । ଏହି ସମୟରେ ମଧ୍ୟ ତାଙ୍କର କେତୋଟି ହାସ୍ୟରସାତ୍ମକ କବିତା ଆତ୍ମ-ପ୍ରକାଶ କରିଥିଲା । ହେଲେହେଁ, ଯେଉଁ ବିପ୍ଳବୀ ସଚ୍ଚିଦାନନ୍ଦଙ୍କୁ ଆମେ ଆଜି ସାଧାରଣତଃ ଜାଣିଆଉଁ ସେ ହେଉଛନ୍ତି ୧୯୩୬ ସାଲ ଓ ତାପରର ଗଣକବି ସଚ୍ଚିଦାନନ୍ଦ । ରାଧାମୋହନ ଗଡ଼ନାୟକଙ୍କ କବିପ୍ରତିଭା ଆଜି ମଧ୍ୟ ମ୍ଳାନ ହୋଇଯାଇନି । "ବିପ୍ଳବୀରାଧାନାଥ" ରାଧାନାଥ-ସାହିତ୍ୟ ଉପରେ ତାଙ୍କର ଶିକ୍ଷ୍ମଦୃଷ୍ଟିର ଓ ରସବୋଧର ପରିଚୟ ଦେଇଥାଏ । "କାଳିଦାସ" ନାଟକରେ କବି କାଳିଦାସଙ୍କ କବିଜୀବନର ଯେଉଁ ପୂର୍ବରାଗଦୃଷ୍ଟି ଓ କଳାସର୍ଜନାର ଯେଉଁ ଶିଳ୍ପୀକ ଦୃଷ୍ଟିଭଙ୍ଗୀ ଦେଖିବାକୁ ମିଳେ ତାହାହିଁ ତାଙ୍କ ସମଗ୍ର ରଚନାର ଯଥାର୍ଥ ମୂଳପିଣ୍ଡ । ଏ ମୂଳପିଣ୍ଡ ଯେପରି ନିଜସ୍ୱ ସେଇପରି ତାହା ଅଭିନବ ଓ ମୌଳିକ । ଗୋଦାବରୀଶ ମିଶ୍ରଙ୍କ ପରେ ଓଡ଼ିଆ ସାହିତ୍ୟରେ ରାଧାମୋହନ ହେଉଛନ୍ତି ଗାଥା କବିତା ରଚନାରେ ଜଣେ ନିପୁଣ କଳାକାର । ଜାତିର ଅତୀତ ବିଭବ ଛନ୍ଦର ମଧୁର ସଂଯୋଜନା ଓ

ବିଷୟବସ୍ତୁର ମୌଳିକ ପରିକଳ୍ପନା ହେତୁ ତାଙ୍କ ହାତରେ ଅଧିକ ହୃଦୟଗ୍ରାହୀ ହୋଇପଡ଼ିଛି । ଅନୁବାଦ-ସାହିତ୍ୟରେ ସେ ଯଥେଷ୍ଟ ମୌଳିକତା ଦେଖାଇ ପାରିଛନ୍ତି । ଉପଯୁକ୍ତ ଭାବଦ୍ୟୋତକ ମଧୁର ଶବ୍ଦ ସନ୍ଦୋହର ପ୍ରୟୋଗ, ସୌନ୍ଦର୍ଯ୍ୟ ନିହିତ କଥାବସ୍ତୁର ନିର୍ବାଚନ, ରସ ଓ ବୈଚିତ୍ର୍ୟ ଉତ୍ପାଦକ ବିଷୟ ବିନ୍ୟାସ, କଳାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ପ୍ରଖ୍ୟାପନ ପାଇଁ କବିଚିତ୍ତର ଏକ ଅଖଣ୍ଡ ରସ ପିପାସା ପ୍ରଦର୍ଶନ—ଏମିତି କେତୋଟି ସାହିତ୍ୟିକ ବୈଶିଷ୍ଟ୍ୟ, କବି ଗଡ଼ନାୟକଙ୍କ କବିତା ଅଧ୍ୟୟନ କଲାବେଳେ, ପାଠକ ମନରେ ସ୍ୱତଃ ଏକ ଅକ୍ଷୟ ମୁଦ୍ରା ଅଙ୍କନ କରିଥାନ୍ତି ।

**ଆଧୁନିକ ଓଡ଼ିଆ ସାହିତ୍ୟବିକାଶର ଚତୁର୍ଥ ପର୍ଯ୍ୟାୟ (୧୯୩୬-୪୭):**— ଚିରଦିନ ଅବହେଳିତ ଓଡ଼ିଆ ଜାତିର ସ୍ୱତନ୍ତ୍ର-ପ୍ରଦେଶ ଗଠନ ଅଭିଳାଷ ୧୯୩୬ ସାଲରେ କେତେକ ପରିମାଣରେ ଚରିତାର୍ଥ ହୋଇଥିଲା । ସ୍ୱତନ୍ତ୍ର ପ୍ରଦେଶ ଗଠନ ପରେ ଜାତିର ଅବଚେତନ ମନରେ ନିଜର ସ୍ଥିତି-ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପାଇଁ ଅପୂର୍ବ ଜାଗରଣ ସୃଷ୍ଟି ହୋଇଥିଲା । ଏହାମଧ୍ୟ ସାହିତ୍ୟସୃଷ୍ଟି ଦିଗରେ କମ ସାହାଯ୍ୟ କରି ନ ଥିଲା । ଜାତିର ଏଇ ଆତ୍ମ-ଚୈତନ୍ୟ ଉଦ୍‌ବୁଦ୍ଧ ହେବା ଯୁଗର ପୂର୍ବରୁ ଅଖିଳଭାରତୀୟ କଂଗ୍ରେସ ଗାନ୍ଧିଜୀଙ୍କ ନେତୃତ୍ୱରେ ୧୯୨୧ ଓ ୧୯୩୦ ସାଲରେ ଭାରତ-ମୁକ୍ତିପାଇଁ ଯେଉଁ ସଂଗ୍ରାମ-ମନୋବୃତ୍ତି ପ୍ରସ୍ତୁତ କରିଥିଲା ତାହା ଓଡ଼ିଆଙ୍କମନରେ ବିକଶିତ ହୋଇଉଠୁଥିବା ସମର-ପିପାସାକୁ ଆହୁରି ବେଶୀ ତୀବ୍ରତର କରାଇ-ଦେଲା । ଓଡ଼ିଶା ତଥା ଭାରତର ରାଜନୈତିକ ପରିସ୍ଥିତି ସହିତ ଆନ୍ତର୍ଜାତିକ ରାଜନୀତି ମିଳିତହୋଇ ଏ ମନୋବୃତ୍ତିକୁ ଏକ ନୂତନ ରୂପାଲୋକରେ ଉଦ୍‌ଭାସିତ କରିଦେଲା । 'ଗଣ'ର ସର୍ବାଙ୍ଗୀନ ମଙ୍ଗଳ

ସାଧନ, ଦେଶରେ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା, 'ବ୍ୟକ୍ତି'ର ସର୍ବାଧିକ ସମ୍ମାନ ସ୍ୱୀକାର, ଭଗବାନ-ପୁରୋହିତ ଅଧ୍ୟୁଷିତ ଧର୍ମବିଶ୍ୱାସର ମୂଳୋତ୍ପାଟନ, 'ନରବ୍ରହ୍ମ'ର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ସଙ୍ଗେ ଦେଶରୁ ଅସାମାଜିକ ବୈଷମ୍ୟ ଓ ଅବିଚାରର ବିଲୋପସାଧନ, ବିଶେଷତଃ ନିଷ୍ପେଷିତ, ନିପୀଡ଼ିତ, ଶୋଷିତ ଓ ଅବହେଳିତ ଜନତାକୁ ଧନିକ ଓ ପ୍ରତିପତ୍ତିଉପଭୋଗୀ ମୁଷ୍ଟିମେୟ ସୁବିଧାବାଦୀ ଲୋକଙ୍କ ଲୌହଶୃଙ୍ଖଳରୁ ମୁକ୍ତିପ୍ରଦାନ-ମାନବଜାତିର ସୁଖ-ସମୃଦ୍ଧି ପାଇଁ ଏ ସବୁ ହେଉଛନ୍ତି ଏକମାତ୍ର ସର୍ବଶ୍ରେଷ୍ଠ ପନ୍ଥା । କାର୍ଲମାର୍କସଙ୍କ ଏହି ଉଦାର ଅମୃତଚିନ୍ତାଧାରା ପ୍ରଥମେ ରୁଷଦେଶରେ ପରୀକ୍ଷିତ ଓ କାର୍ଯ୍ୟରେ ପରିଣତ ହୋଇ ସମୟକ୍ରମେ ପୃଥିବୀର ଚିନ୍ତାନାୟକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଏହି ସାମ୍ୟବାଦ-ମତ ଓଡ଼ିଶାରେ ୧୯୩୬ ସାଲ ପରେ ଯେଉଁ ସାର୍ଥକ ରୂପ ଗ୍ରହଣ କରିଥିଲା ତାର ଅବିସମ୍ବାଦିତ ପ୍ରବର୍ତ୍ତକ ଥିଲେ ଭଗବତି ଚରଣ ପାଣିଗ୍ରାହୀ । "ନବଯୁଗସାହିତ୍ୟ ସଂସଦ"ନାମକ ସାଂସ୍କୃତିକ ଅନୁଷ୍ଠାନ ତଥା ତାର ମୁଖପତ୍ର "ଆଧୁନିକ" ମାସିକ ପତ୍ରିକା ମାଧ୍ୟମରେ ଭଗବତି ଚରଣ ପାଣିଗ୍ରାହୀ ନିଜର ସମଧର୍ମୀ ଲେଖକମାନଙ୍କ ସହଯୋଗରେ ପୂର୍ବୋକ୍ତ ନୂତନ ଯୁଗମନ୍ତ୍ର-ବାଣୀ ପ୍ରଚାର କରି ଏ ଦେଶ ସାହିତ୍ୟ-ସୃଷ୍ଟିର ମନୋବୃତ୍ତିରେ ଏକ ଅଚିନ୍ତ୍ୟପୂର୍ବ ପରିବର୍ତ୍ତନର ମୂଳଭିତ୍ତି ପ୍ରତିଷ୍ଠା କରିଥିଲେ । ପୂର୍ବର ସ୍ୱପ୍ନ ବିଳାସୀ "ସବୁଜ କବି" କାଳିନ୍ଦୀ ଓ ବୈକୁଣ୍ଠ କବିତାର ଭାବଭୋଳା ସ୍ୱପ୍ନ-ସଂସାର ଓ ଇନ୍ଦ୍ରିୟାତୀତ ରହସ୍ୟବାଦର କୁହୁଜାଲ ଧୀରେ ଧୀରେ ପରିତ୍ୟାଗ କରି ବାସ୍ତବମୁଖୀ, ବିଦ୍ରୋହାତ୍ମକ କବିତାର ଆୟୁମାରମ୍ଭ ମାତ୍ର ଆରମ୍ଭ କରିଥିଲେ । ଯେତେବେଳେ ଦେଶରେ ସାମ୍ୟବାଦ-ଭାବଧାରା ପ୍ରଚାରିତହେଲା ସେତେବେଳେ ଏହି ଉଭୟ କବି ଏହି ନୂତନ ଭାବଧାରା ସଙ୍ଗେ ତାଳପକାଇ ବିଦ୍ରୋହାତ୍ମକ କବିତା ସୃଷ୍ଟିରେ,

ଆତ୍ମ-ନିହିତ ହୋଇପଡ଼ିଲେ । ଏଇ ନୂତନ ସାହିତ୍ୟ ଆଜ "ପ୍ରଗତି-ଶୀଳ ସାହିତ୍ୟ" ନାମରେ ଏ ଦେଶରେ ଗୃହୀତ ହୋଇଛି ।

ଓଡ଼ିଆ ପ୍ରଗତିଶୀଳ ସାହିତ୍ୟ ବହୁ ଖ୍ୟାତନାମା ଓ ଆଖ୍ୟାତ-ନାମା ଲେଖକଙ୍କ ବରଣୀୟ ଲେଖାବଳୀରେ ପରିପୂର୍ଣ୍ଣ । କୃଷ୍ଣଚନ୍ଦ୍ର କର, ଗୋକୁଳାନନ୍ଦ ଚୂଡ଼ାମଣି, ସୁରେନ୍ଦ୍ରନାଥ ଦ୍ୱିବେଦୀ, ମୋହନ ଦାସ, ନବକୃଷ୍ଣ ଚୌଧୁରୀ, ଅନନ୍ତ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ମନମୋହନ ମିଶ୍ର ପ୍ରଭୃତି ବହୁ ଲେଖକ ଏଇ ନୂତନ ସାହିତ୍ୟିକ ଚିନ୍ତାଧାରାରେ ଯାଚିତ ହୋଇ ଏ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଏମାନଙ୍କ ମଧ୍ୟରେ ଶେଷୋକ୍ତ ତିନିଜଣ ଲେଖକ ଏ ସାହିତ୍ୟର ଯଥାର୍ଥ କର୍ଣ୍ଣଧାର । ଅନନ୍ତ ପଟ୍ଟନାୟକ ବହୁ କବିତାରେ ମାର୍କ୍ସୀୟ ଚିନ୍ତାଧାରର ପରିପ୍ରଚାର କରିବା ସଙ୍ଗେ ସେମାନଙ୍କ ସାହିତ୍ୟିକ ଗୌରବ ପ୍ରତିଷ୍ଠା ଦିଗରେ ଯତ୍ନଶୀଳ ହୋଇ ଉଠିଛନ୍ତି । ସଙ୍ଗୀତର ମୋହନ ମାଧୁରୀ ପରିବେଷଣ ହେତୁ ସେ ସବୁ କବିତାର ମହମାୟ ସୌନ୍ଦର୍ଯ୍ୟ ପ୍ରତିଷ୍ଠିତ ହୋଇଛି । ଆଜର କବିତା ସଙ୍ଗେ ତାଳ ପକାଇବା ଉଦ୍ଦେଶ୍ୟରେ ଅନନ୍ତ ପଟ୍ଟନାୟକ ଯେଉଁ ଦୁର୍ବୋଧ ଭାଷାର ଆଙ୍ଗିକ ବର୍ତ୍ତମାନ ଅନୁସରଣ କରୁଛନ୍ତି ତାର ଚିରନ୍ତନତା କେତେ ତା ସମ୍ପୂର୍ଣ୍ଣ ନିର୍ଦ୍ଧାରଣ କରିବ । ସଚ୍ଚିଦାନନ୍ଦଙ୍କ ବିପ୍ଳବୀ ଚିତ୍ତବୃତ୍ତି "ଚିତ୍ରଗ୍ରୀବ ଉପନ୍ୟାସ" (୧୯୩୬) ତଥା ତାଙ୍କର "ଅଭିଯାନ" କବିତା ପୁସ୍ତକରେ ପରିଲକ୍ଷିତ ହୁଏ । ଏ କବିତାଗୁଡ଼ିକ ପୂର୍ଣ୍ଣତଃ ପ୍ରଚାରମୂଳକ; ଏମାନଙ୍କର ଶିଳ୍ପ-ଗୌରବ କିଛି ନାହିଁ କହିଲେ ଚଳେ । ସମ୍ପୂର୍ଣ ବିଶାଳ-ବକ୍ଷରେ ଏମାନେ ସାମୟିକ ମଧୁର ନୂପୁର ନିକ୍ୱଣ ଶୁଣାଇଥିଲେ ମାତ୍ର । କେବଳ କବି ସଚ୍ଚିଦାନନ୍ଦଙ୍କର ସାର୍ଥକ ସୃଷ୍ଟି ଭ୍ରଷ୍ଟାର ଭିତ୍ତିଭୂମେ

ଏମାନଙ୍କୁ ଗ୍ରହଣ କରାଯାଇପାରେ । "ବାଜିରାଉତ" କବିତା ଭିତରେ ଯେଉଁ ସୁଦୃଢ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ, ସେଥିରେ ତାଙ୍କର ବିପ୍ଳବୀ ଚିନ୍ତାଧାରା ଯଥାର୍ଥ ସାହିତ୍ୟିକ ରୂପ ବିଭବରେ ମହାପ୍ରାଣ ହୋଇ ଉଠିଛି । ତାଙ୍କର ଅମୃତ ଲେଖନୀରେ ଆଜି ଢେଙ୍କାନାଳର ସାଧାରଣ ନାଉରିଆ ବାଳକ ଶୋଷିତ ତଥା ନିଷ୍ପେଷିତ ସମାଜର ଯଥାର୍ଥ ପ୍ରତିନିଧିତ୍ୱ କରିବାରେ ସମର୍ଥ ହୋଇ ପାରିଛି । ସାମାଜିକ କୁସଂସ୍କାର, ଅନ୍ୟାୟ-ଅତ୍ୟାଚାର ଓ ପେଷଣ-ଧର୍ଷଣକୁ କେନ୍ଦ୍ରକରି ସାଧାରଣ ଉତ୍କଳୀୟ ଜୀବନର ସାର୍ଥକ ପରିବେଶ ଭିତରେ ସଚ୍ଚିଦାନନ୍ଦ ଯେଉଁ କେତୋଟି କ୍ଷୁଦ୍ର ଗଳ୍ପ ରଚନା କରିଛନ୍ତି ସେଥିରେ ମାର୍କସୀୟ ଚିନ୍ତାଧାରା ତାର ରାଜନୈତିକ ପୋଷାକଟିକୁ ଫିଙ୍ଗି ଦେଇ ଏକ ଏକ ଅପୂର୍ବ ଶିଳ୍ପ ଗୌରବରେ ବିମଣ୍ଡିତ ହୋଇ ପାରିଛି ।

୧୯୩୬ ସାଲରୁ କ୍ଷୁଦ୍ର କବିତା, ଗଳ୍ପ, ଉପନ୍ୟାସ, ନାଟକ, ସମାଲୋଚନା ପ୍ରଭୃତି ସାହିତ୍ୟିକ ବିଭାଗର ଆଙ୍ଗିକ ଓ ଆତ୍ମିକ ରୂପ-ବିଭବ ଏକ ଅଶ୍ରୁତପୂର୍ବ ପରିବର୍ତ୍ତନ ମଧ୍ୟ ଦେଇ ଗତି କରିଛି । ପାରମ୍ପରିକ ଶିଳ୍ପ ଆଦର୍ଶରେ ଅନୁପ୍ରାଣିତ ହୋଇ ମାନସିଂହ, ପଟ୍ଟନାୟକ ପ୍ରଭୃତି କବିମାନେ ଏହି ସମୟରେ ସଙ୍ଗୀତାତ୍ମକ ଭାଷା ଓ ସୌନ୍ଦର୍ଯ୍ୟମୂଳକ ଛନ୍ଦ ଆଶ୍ରୟରେ କବିତା ଲେଖିଛନ୍ତି; କିନ୍ତୁ ଏହି ସମୟଠାରୁ ଗୀତିକବିତା ଅଧିକାଂଶ ଲେଖକଙ୍କ ରଚନାରେ ତାର ସମସ୍ତ ସୌନ୍ଦର୍ଯ୍ୟ ହରାଇ ବସିଥିବାର ଦେଖିବାକୁ ମିଳେ । ଗୀତି କବିତାର ସ୍ଥାନ ଅଧିକାର କରିଥିଲା "ଗଦ୍ୟ କବିତା" । ପ୍ରାଥମିକ ଅବସ୍ଥାରେ ଗୀତି-କବିତାର ଗୀତ-ଧର୍ମିତି ଗଦ୍ୟ କବିତାରେ ସଂରକ୍ଷିତ ହୋଇଥିଲା । କିନ୍ତୁ ସମୟକ୍ରମେ

ତାହା ମଧ୍ୟ କବିତାରୁ ଅନ୍ତର୍ହିତ ହୋଇଗଲା । ତେଣୁ ଗଦ୍ୟମୟ ଜୀବନରେ ଗଦ୍ୟାତ୍ମକ ରୂପ-ବିଭବହିଁ ଗଦ୍ୟ କବିତାର ଶ୍ରେଷ୍ଠ ଆଙ୍ଗିକ ରୂପେ ଲେଖକମାନଙ୍କ ଦ୍ୱାରା ଗୃହୀତ ହେଲା । ଆଲୋଚ୍ୟ ସମୟରେ ଏଇ ଗଦ୍ୟ-ରୂପାନ୍ତରହିଁ କବିତାର ବହିଃସ୍ୱରୂପର ଏକମାତ୍ର ବୈଶିଷ୍ଟ୍ୟ ନୁହେଁ । ଭାବ—ଦ୍ୟୋତକ ଭାଷା ମଧ୍ୟ ଏଇ ସମୟରେ ସମ୍ପୂର୍ଣ୍ଣ ଏକ ନୂତନ ବେଶ ପରିଗ୍ରହଣ କରିଥିଲା । ପାରମ୍ପରିକ ଶିଳ୍ପ ସୌନ୍ଦର୍ଯ୍ୟ-ଦ୍ୟୋତକ ଅଳଙ୍କାର-ଉପମାନ ଓ ଭାବ ପ୍ରକାଶକ ଶବ୍ଦ, ଏଇ ସମୟରେ ପରିତ୍ୟକ୍ତ ହୋଇଥିଲା ଓ ସେମାନଙ୍କ ସ୍ଥାନ ଅଧିକାର କଲା ଏପରି ଏକ ଭାଷା ଯାହା ଏ ଦେଶ ଲୋକଙ୍କ ଜୀବନ-ଯାତ୍ରାପଥରେ ସମ୍ପୂର୍ଣ୍ଣ ନୂତନ ଥିଲା । ଜୀବନର ପରିଧି ତଥା ଦୃଷ୍ଟିକୋଣର ପରିସର ପରିବୃଦ୍ଧି ଲାଭ କରିବାରୁ କବିତାରେ ବିଦେଶୀ ଅଳଙ୍କାର-ଉପମାନ, ଏପରିକି ବିଦେଶୀ ଶବ୍ଦ ସମ୍ଭାର ମଧ୍ୟ ନିର୍ବିବାଦରେ ନିଜର ଆସନ ଜମାଇ ବସି ପଡ଼ିଲେ । ଲେଖକମାନେ କେବଳ ଏଇଥିରେ ସନ୍ତୁଷ୍ଟ ନ ହୋଇ କବିତାର ଭାଷାକୁ ଆହୁରି ନବ ନବ ରୂପରେ ଉପସ୍ଥାପନ କଲେ । ନିର୍ଦ୍ଦିଷ୍ଟ ଭାବର ଦ୍ୟୋତନା ପାଇଁ ଆନୁସଙ୍ଗିକ ପ୍ରତୀକାତ୍ମକ ଶବ୍ଦ ସଂଗ୍ରହ କରି ସେମାନେ କବିତାକୁ ଏପରି ଏକ ନିଗୁଢ଼ ଶୃଙ୍ଖଳରେ ବାନ୍ଧି ରଖିଲେ ଯେ ତାହା ଅଧିକାଂଶ ସମୟରେ ଅଧିକାଂଶ ପାଠକଙ୍କ ନିକଟରେ ଦୁର୍ବୋଧ ବୋଲି ପ୍ରତୀତ ହେଲା । କବିତାର ଏ ଆଙ୍ଗିକ ପରୀକ୍ଷା ପ୍ରାଥମିକ ଅବସ୍ଥାରେ କେତେକ ପ୍ରମାଦ ସୃଷ୍ଟି କରିଥିଲା; କିନ୍ତୁ ସମୟକ୍ରମେ ଲୋକ ଚିତ୍ତରେ ରସ ଗ୍ରହଣର ମାନଦଣ୍ଡ ପରିବର୍ତ୍ତିତ ହେବାରୁ ଓ ଲେଖକମାନେ ଶିଳ୍ପ ଦକ୍ଷତା ଲାଭ କଲାରୁ ଏ ଆଙ୍ଗିକର ମଧ୍ୟ ବହୁ ଉନ୍ନତ ସାଧିତ ହୋଇଥିଲା । ସଚ୍ଚିଦାନନ୍ଦଙ୍କ "ଭାନୁମତୀର ଦେଶ" (୧୯୪୮) କବିତାର ଭାଷା

ଯେ ଦୁର୍ଭେଦ୍ୟ ଓ ଦୁର୍ବୋଧ ନ ହୋଇ ଆଜି ଅତି ସହଜ ରୂପେ ଦେଖାଯାଉଛି ତାହା କେହି ଅସ୍ୱୀକାର କରି ପାରିବେନାହିଁ । କବିତାର ଏଇ ପ୍ରଶ୍ନାତ୍ମକ ଭାଷା ଉପରେ ସ୍ରଷ୍ଟାର ଗଭୀର ରସବୋଧ, ଗାମ୍ଭୀର୍ଯ୍ୟକ୍ ଅନ୍ତର୍ଦୃଷ୍ଟି ଓ ସୌନ୍ଦର୍ଯ୍ୟ ମୂଳକ ପରିପ୍ରକାଶ ଉପରେ ପ୍ରତିଷ୍ଠିତ ହୋଇ ପାଠକର ଅବଚେତନ ମନରେ ଘନୀଭୂତ ରସ ପରିବେଷଣ କରିବାରେ ସମର୍ଥ ହୋଇଛି ତାହା ଗତ କେତେ ବର୍ଷ ଭିତରେ ଲେଖାଯାଇଥିବା ଅନନ୍ତ ପଟ୍ଟନାୟକ, ଗୁରୁଚରଣ ମହାନ୍ତି ପ୍ରଭୃତି ଲେଖକଙ୍କ କେତେକ କବିତାରୁହିଁ ସ୍ପଷ୍ଟ ଅନୁଭୂତ ହୁଏ ।

ଆଲୋଚ୍ୟ ସମୟ (୧୯୩୬-୪୬)ରେ ରଚିତ କବିତା, ଗଳ୍ପ, ଉପନ୍ୟାସ, ନାଟକ ପ୍ରଭୃତିର ଆଙ୍ଗିକରୂପ-ବୈଚିତ୍ର୍ୟ ସର୍ବାଦୌ ଅଭିନବ ଓ ପ୍ରୀତିକର । ଅଧିକାଂଶ ସ୍ଥଳରେ ପ୍ରତ୍ୟକ୍ଷ ଶୋଷଣ କିମ୍ବା ତାର କୌଣସି ବିଭାଗ ସୃଷ୍ଟିର ବିଷୟବସ୍ତୁ ହୋଇଥାଏ; କିନ୍ତୁ ଏ ଶୋଷଣ ସାଧାରଣ କୌଣସି ରାଜନୀତିକ ଶୁଷ୍କ ତତ୍ତ୍ୱ-ସର୍ବସ୍ୱ ନ ହୋଇ ସାହିତ୍ୟିକ ରସ ପ୍ରଖ୍ୟାପନ ଓ ପ୍ରତିଷ୍ଠାର ସହାୟକ ରୂପେ ଆତ୍ମ-ପ୍ରକାଶ କରିଥାଏ । ଅନ୍ୟ କଥାରେ କୁହାଯାଇପାରେ ଯେ ଶୋଷଣ ରଚନାର ବିଷୟବସ୍ତୁ ହେଲେହେଁ ଏହାହିଁ ତା ଜନ୍ମର ସର୍ବଶେଷ କିମ୍ବା ସର୍ବଶ୍ରେଷ୍ଠ ଆଦର୍ଶ ନୁହେଁ । ସେଇ ଶୋଷଣକୁ କେନ୍ଦ୍ରକରି ତାକୁ ଏକ ବିଶିଷ୍ଟ ରୂପ-ବିଭବ ଓ ବଳିଷ୍ଠ ଭିତ୍ତି ଉପରେ ପ୍ରତିଷ୍ଠା କରିବା ହେଉଛି ଏଇ ସମସ୍ତ ରଚନାର ପ୍ରକୃତ ଲକ୍ଷ୍ୟ । ବିଷୟ ନିର୍ବାଚନ ଓ ତାର ସମୁଚିତ ଉପସ୍ଥାପନ ହେତୁ ସମଗ୍ର ରଚନାର ଅନ୍ତଃ-ସୌନ୍ଦର୍ଯ୍ୟ ଯେତେବେଳେ ଅଭିନବ ରୂପ ଲାଭକରି ସ୍ୱତଃ

ସ୍ପନ୍ଦିତ ହୋଇ ଉଠେ ସେତେବେଳେ ତାର ଆତ୍ମିକରସ-ଘନ-ରୂପ ସାର୍ଥକ ଅଭିବ୍ୟକ୍ତି ଲାଭକରେ । ରଚନାର ଏଇ ଆତ୍ମିକ ରସ ବିଭବ ତାର ସୌନ୍ଦର୍ଯ୍ୟ ଦ୍ୟୋତକ ସୃଷ୍ଟି-ପରିକଳ୍ପନା ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । ଏଇ ଉଭୟର ମଧୁର ଓ ପ୍ରୀତିକର ସମନ୍ୱୟରେ ଆତ୍ମପ୍ରକାଶ କରେ ଯଥାର୍ଥ ସାହିତ୍ୟ-ସମ୍ପଦ । ଆଲୋଚ୍ୟ ସମୟ ମଧ୍ୟରେ ଗଳ୍ପ, ଉପନ୍ୟାସ କିମ୍ବା ନାଟକର ଆତ୍ମିକରୂପ-ସମ୍ପଦ ଓ ତାର ଆଙ୍ଗିକ-ବିଭବରେ ଯଥେଷ୍ଟ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପ କିମ୍ବା ଉପନ୍ୟାସର ବିଷୟବସ୍ତୁ ଯାହା ଥାଉନା କାହିଁକି ସେ ବିଷୟବସ୍ତୁର ବିନ୍ୟାସ-କୌଶଳ ଅଧିକାଂଶ ସ୍ଥଳରେ ପ୍ରାଣହୀନ ଓ ବୈଚିତ୍ର୍ୟଶୂନ୍ୟ । ଏହି ବିନ୍ୟାସ-କୌଶଳକୁ କହନ୍ତି ସୃଷ୍ଟିର 'ଟେକ୍‌ନିକ୍' । ଏଇ "ଟେକ୍‌ନିକ୍"ର ଆଶ୍ରୟ ନେଇଛନ୍ତି କେତେକ ପରିମାଣରେ ଗାଳ୍ପିକ ଓ ଔପନ୍ୟାସିକମାନେ ୧୯୨୧-୩୫ ସାଲ ଭିତରେ । ୧୯୩୬-୪୭ ସାଲରେ ଏଇ "ଟେକ୍‌ନିକ୍" ଆହୁରି ସୁସ୍ପଷ୍ଟତର ରୂପେ ଉନ୍ନତିଲାଭ କରିଛି ।

ରଚନାର ଆତ୍ମିକ ରୂପ-ବିଭବ ବା ତାର ଅନ୍ତଃସୌନ୍ଦର୍ଯ୍ୟ ବହୁ ପରିମାଣରେ ଚରିତ୍ରମାନଙ୍କ ଅବଚେତନ ମନର ନିଗୂଢ଼ ଦ୍ୱାରୋଦ୍‌ଘାଟନ ହେତୁ ପରିବୃଦ୍ଧି ଲାଭ କରିଥାଏ । ଏ ବିଚିତ୍ର ଜଗତ୍‌ ପ୍ରତି ମୁହୂର୍ତ୍ତର ପରିବର୍ତ୍ତନ ମଧ୍ୟରେ ଯେଉଁ ବିଚିତ୍ର ଜୀବଜଗତ୍‌ ନିଜ ବକ୍ଷରେ ଧାରଣ କରି ଗତି କରୁଛି ସେଥି ମଧ୍ୟରେ ମନୁଷ୍ୟ ବିଶେଷତଃ ତାର ମନ ଅତି ବୈଚିତ୍ର୍ୟମୟ ଓ ଏହା ହେଉଛି ଅତି ବିସ୍ମୟକର ସୃଷ୍ଟି । ମନର ଗତି, ପୁଣି, ଆହୁରି ଅଚିନ୍ତ୍ୟମୟ ଓ ଅବର୍ଣ୍ଣମୟ । ତାର କାରଣ ଏହା ପ୍ରତିମୁହୂର୍ତ୍ତରେ ଅନୁକୂଳ ବା ପ୍ରତିକୂଳ ଘଟଣା-

ସଂଘାତର ସମ୍ମୁଖୀନ ହୋଇଥାଏ । ବହୁ ସମସ୍ୟାମୟ ସାମାଜିକଜୀବନ ଯେତେବେଳେ ଧ୍ୱସ୍ତବିଧ୍ୱସ୍ତ ଅଥବା ଖଣ୍ଡବିଖଣ୍ଡିତ ହୋଇଯାଏ, ସାମାଜିକ ଜୀବନର ମୂଲ୍ୟବୋଧ ଯେତେବେଳେ ଦ୍ରୁତର ପରିବର୍ତ୍ତନ ମଧ୍ୟରେ ଗତିକରେ, ବ୍ୟକ୍ତିର ଆତ୍ମ-ସଚେତନତା ଯେତେବେଳେ ଆତ୍ମ-କେନ୍ଦ୍ରିକ ହୋଇ ସ୍ୱ-ପ୍ରତିଷ୍ଠା ଦିଗରେ ଦୃଷ୍ଟି-ନିବଦ୍ଧ ହୁଏ, ରାଜନୈତିକ ଦଣ୍ଡ ପରିବର୍ତ୍ତନ ଯେତେବେଳେ ପାରିବାରିକ ତଥା ବ୍ୟକ୍ତିଗତ ଜୀବନ-ଧାରାକୁ ଅତି କଷ୍ଟୁ ଭାବରେ ସଂକ୍ରମଣ କରି ତାର ସ୍ୱାଭାବିକ ପ୍ରବାହର ଗତି ଅବରୋଧ କରେ ସେତେବେଳେ ମନୁଷ୍ୟ ମନର ପ୍ରାକୃତିକ ନିୟମରେ ଆସେ ଘୋର ପ୍ରତିକ୍ରିୟା । ଏ ବାସ୍ତବ ଦୁନିଆ ଓ ଏ ଦୁନିଆ ପ୍ରତି ମନୁଷ୍ୟ ମନର ସହଜ ପ୍ରତିକ୍ରିୟା ଆମେ ଦେଖି ଦେଖୁନୁ; କିନ୍ତୁ ନିପୁଣ କଳାକାର ଯଥାର୍ଥ ଶିଳ୍ପୀ ମନୋବୃତ୍ତି ନେଇ ମନୁଷ୍ୟ ମନର ଏ ପ୍ରତିକ୍ରିୟାପ୍ରତି ଅନ୍ତର୍ଦୃଷ୍ଟି ନିକ୍ଷେପ କରେ ଓ ନିଜର ଅପୂର୍ବ ସୃଷ୍ଟି-ପ୍ରତିଭା-ବଳରେ ତାହାକୁ ଦିଏ ରସ-ଘନ-ରୂପ । ସମାଜର ବାସ୍ତବ ମାଟିପଦିନରୁ ମନୁଷ୍ୟ ନେଇ ତା ବିଚିତ୍ର ମନର ଘାତପ୍ରତିଘାତ ଓ ହୃଦୟର ଶତଶତ ବିଚିତ୍ର ସ୍ପନ୍ଦନକୁ ସୂକ୍ଷ୍ମାତିସୂକ୍ଷ୍ମ ଭାବେ ପର୍ଯ୍ୟାଲୋଚନା ତଥା ପରିବେଷଣ କରିବା ହେଉଛି ଆଲୋଚ୍ୟଯୁଗର ଗଳ୍ପ-ଉପନ୍ୟାସ କିମ୍ବା ନାଟକର ଶ୍ରେଷ୍ଠ କୃତିତ୍ୱ । "ଛମାଣଆଠଗୁଣ୍ଠ" (୧୮୯୭) ଉପନ୍ୟାସର ରାମଚନ୍ଦ୍ରମଙ୍ଗରାଜ କିମ୍ବା ଚମ୍ପାଶାରିଆର ଦ୍ୱାନ୍ଦ୍ୱିକ ମାନସିକ ପରିସ୍ଥିତି ବର୍ଣ୍ଣନା ସ୍ରଷ୍ଟାର ସୃଷ୍ଟି-ଲକ୍ଷ୍ୟ ନ ଥିଲା । ବହୁ ଅବାନ୍ତର ବର୍ଣ୍ଣନା ଓ ଅପ୍ରାସଙ୍ଗିକ ଟୀକାଟିପ୍ପଣୀ ଥିଲା ତାଙ୍କର ଲକ୍ଷ୍ୟ । କିନ୍ତୁ "ବାସନ୍ତୀ" (୧୯୨୮) ଉପନ୍ୟାସରେ ନାୟକ ନାୟିକାର ହୃଦୟସ୍ପନ୍ଦନ ତଥା ସେମାନଙ୍କ ମନର ଗତିବିଧି ଉପରେ ଲେଖକମାନେ ଅତ୍ୟଧିକ ଦୃଷ୍ଟି ଦେଇଛନ୍ତି । ଅବଚେତନ

ମନର ସୁପ୍ତ କାମନାରାଶି ଉପରେ ପରସ୍ଥିତି ଓ ଚରିତ୍ର ସଂଘାତରେ ନୂତନ ନୂତନ ରୂପବିଭବ ଲାଭ କରନ୍ତି ଓ ସେଇ ନୂତନ ରୂପ ବୈଚିତ୍ର୍ୟର ଅନୁସନ୍ଧାନ ନିମିତ୍ତ ନିପୁଣ କଳାକାର ଉପରେ ସେଇ ଅବଚେତନ ମନକୁ ନୂତନ ରୂପେ ଆବିଷ୍କାର କରେ ତାହାହିଁ ହେଉଛି ଏଇ ସମସ୍ତ ସାହିତ୍ୟର ଏକ ବିଶିଷ୍ଟ ଶିଳ୍ପ ଗୌରବ । ଫ୍ରୟେଡ୍ ପ୍ରବର୍ତ୍ତିତ ନୂତନ ସ୍ୱପ୍ନ-ତତ୍ତ୍ୱ ଲେଖକମାନଙ୍କୁ ଯେ ଏ ଦିଗରେ ପ୍ରଭାବିତ କରିଛି, ଏଥିରେ ସନ୍ଦେହ ନାହିଁ । ରଚନାର ଏ ଶିଳ୍ପ-ନିୟମ ସ୍ୱାଧୀନତାପର ସାହିତ୍ୟ ଭିତରେ ଅତି ବ୍ୟାପକ ଭାବେ କାର୍ଯ୍ୟକାରୀ ହୋଇଥିବାର ଦେଖିବାକୁ ମିଳେ ।

**ସ୍ୱାଧୀନତା-ପର ଆଧୁନିକ ଓଡ଼ିଆ ସାହିତ୍ୟ (୧୯୪୭-୫୯):—** ୧୯୩୬-୪୮ ସାଲ ଭିତରେ ଏପରି ଅନେକ ଲେଖକ ଆବିର୍ଭାବ ଲାଭ କରିଛନ୍ତି ଯେଉଁମାନେ ବର୍ତ୍ତମାନ ସୁଦ୍ଧା ଲେଖନୀ ଚାଳନାରୁ ବିରତ ହୋଇ ନାହାନ୍ତି । ସେଇ ହେତୁରୁ ସେମାନଙ୍କୁ ଅଧ୍ୟୟନ କରିବାକୁ ହେଲେ ୧୯୩୬-୪୭ ଓ ୧୯୪୭-୫୯ ଅର୍ଥାତ୍ ଏଇ ଉଭୟ ସମୟରେ ଲିଖିତ ଲେଖାମାନଙ୍କ ପ୍ରତି ଦୃଷ୍ଟିଦେବା ଉଚିତ । ସେଇହେତୁ ୧୯୩୬-୪୭ ସାଲର ସାହିତ୍ୟ-ବିଭାଗରେ ସେମାନଙ୍କୁ ସ୍ୱତନ୍ତ୍ରଭାବେ ଆଲୋଚନା କରାଯାଇନି । ଏଠାରେ ଆଉ ଗୋଟିଏ କଥା ସ୍ମରଣ ରଖିବା ଦରକାର । ଦେଶର ସାମାଜିକ ତଥା ରାଜନୈତିକ ଆବହାଓ୍ୱା ପରିବର୍ତ୍ତନ ସଙ୍ଗେ ଲୋକ-ଚିତ୍ତରେ ନୂତନ ଜୀବନବୋଧର ଜାଗ୍ରତ ସଚେତନତା ନୂତନଭାବେ ଅନୁଭୂତ ହୋଇଥିଲା । ପୁନଶ୍ଚ ଲୋକଙ୍କ ଦୃଷ୍ଟିକୋଣର ପରିସର ବୃଦ୍ଧି ସଙ୍ଗେ ଦେଶରେ ରାଜନୈତିକ ବହୁ "ବାଦ" ପ୍ରବେଶ ଲାଭକରିଥିଲା । ତା ସଙ୍ଗେ ସଙ୍ଗେ ଆସିଲା ସାହିତ୍ୟିକ ବହୁ ଆଦର୍ଶ । ନୂତନ ଜୀବନ-

ବୋଧର ନୂତନ ଅନୁଭୂତି ଓ ବିଦେଶୀ ସାହିତ୍ୟ ସମ୍ପର୍କପ୍ରସୂତ ବିବିଧ ଆତ୍ମିକ-ଆଙ୍ଗିକ ରୂପ-ବିଭବ, ଏ ଉଭୟେ ୧୯୩୬-୪୬ ସାଲରେ ପ୍ରଥମେ ଆବିର୍ଭାବ ଲାଭକରି ଯେଉଁ ନୂତନ ସାହିତ୍ୟ-ସୃଷ୍ଟିର ସଙ୍କେତ ଦେଇଥିଲେ ସେଇ ନୂତନ ସୃଷ୍ଟି ୧୯୪୬-୫୯ ସାଲ ସମୟରେ ଅପୂର୍ବ ରୂପାଲୋକରେ ଉଦ୍‌ଭାସିତ ହୋଇ ଉଠିଲା । ତେଣୁ ଏ ଉଭୟ ଯୁଗ ସାହିତ୍ୟର ସ୍ୱର ଭିତରେ ବିଶେଷ ପ୍ରଭେଦ ଦେଖା ନଯିବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ଏ ବିଭେଦ ବା ପ୍ରଭେଦ କେବଳ ପରିମାଣ ଓ ପରିଣତିରେ ପରିଲକ୍ଷିତ ହୁଏ; ରୂପ ବା ସ୍ୱରଗତ ବିଭେଦ ଏମାନଙ୍କ ଭିତରେ ନାହିଁ କହିଲେ ଚଳେ ।

ଗତ ପଚିଶ ବର୍ଷ ବିଶେଷତଃ ଗତ ବାରବର୍ଷର ଓଡ଼ିଆ ସାହିତ୍ୟ ସମୀକ୍ଷା କଲାବେଳେ ସମଗ୍ର ସାହିତ୍ୟର ଗତି, ପ୍ରକୃତି ଓ ତା ଅଭିମୁଖ୍ୟର ଗୋଟାଏ ସ୍ଥୂଳ ପରିଚୟ ଦେବା ଯେତେ ସହଜ ଓ ନିରାପଦ, ଅଧିକାଂଶ ଲେଖକଙ୍କ ପ୍ରତ୍ୟେକ ସୃଷ୍ଟି ବା ସେମାନଙ୍କ ସମସ୍ତ କୃତି ଉପରେ କୌଣସି ସ୍ଥିର ଅଭ୍ରାନ୍ତ ଅଭିମତ ପ୍ରକାଶ କରିବା ସେତେ ପ୍ରମାଦଶୂନ୍ୟ ନୁହେଁ । ସାମାନ୍ୟ ପଚିଶଟି ବର୍ଷ ଭିତରେ ଦେଖା ଦେଇଥିବା ସାହିତ୍ୟର ପରିମାଣଗତ ବିଶାଳତା ଓ ବିଭିନ୍ନତା, ସେ ସାହିତ୍ୟର ଆତ୍ମିକ-ଆଙ୍ଗିକ ରୂପ-ସମ୍ପଦର ବିଚିତ୍ରତା ଓ ଅଭିନବତା, ସର୍ବୋପରି ଲେଖକମାନଙ୍କ ସଂଖ୍ୟାର ବହୁଳତା ଓ ସେମାନଙ୍କ କୃତିର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ-ସ୍ତରର ତାରତମ୍ୟ ଆଲୋଚନା କଲେ ସେମାନଙ୍କୁ ସାର୍ଥକ ସମୀକ୍ଷାର ଘୋର ପରିପନ୍ଥୀ ରୂପେ ଗ୍ରହଣ କରାଯାଇପାରେ । ତଥାପି ସେମାନଙ୍କ କୃତିର କେତେକ ସାଧାରଣ ବୈଶିଷ୍ଟ୍ୟ ଉପରେ ଆଲୋକପାତ କରିବା ଅସମୀଚୀନ ନୁହେଁ । ସେଇ ହେତୁରୁ

ଏଇ ଲେଖକମାନଙ୍କୁ ନିମ୍ନଲିଖିତ ଗୁରେଟି ବିଭାଗରେ ଶ୍ରେଣୀଭୁକ୍ତ କରାଯାଉଛି । ଯଥା—(କ) ୧୯୨୧-୩୫ ସାଲରେ ସୁନାମ ଅର୍ଜନ କରିଥିବା କେତେଜଣ ଲେଖକ । ଏମାନେ ଏ ଗୁରୁଶ୍ରେଣୀ ମଧ୍ୟରେ ବୟୋଜ୍ୟେଷ୍ଠ । ଏମାନଙ୍କର ସାହିତ୍ୟ ସାଧନା ଦୀର୍ଘକାଳ ସ୍ଥାୟୀ ହୋଇ ରହିଥିବାରୁ ଏମାନେ ଗତ ପଚିଶ ବର୍ଷ ମଧ୍ୟରେ ମଧ୍ୟ ସର୍ବଶ୍ରେଷ୍ଠ ଲେଖକ ହିସାବରେ ଗୌରବ ପାଇ ଆସୁଛନ୍ତି । କିନ୍ତୁ ସେମାନଙ୍କ କୃତିର ଅନ୍ତଃପ୍ରକୃତି ପର୍ଯ୍ୟାଲୋଚନା କଲେ ଜଣାଯାଏ ଏମାନଙ୍କ ସମସ୍ତ ସୃଷ୍ଟି-ପ୍ରତିଭା ସାଧାରଣତଃ ୧୯୩୫ ସାଲ କିମ୍ବା ଅତି ବେଶି ହେଲେ ୧୯୪୦ ସାଲ ବେଳକୁ ମ୍ଳାନ ହୋଇ ଆସିଛି । ପରିବାରେ ଭିତରେ ବୃଦ୍ଧବୃଦ୍ଧାମାନେ ତରୁଣମାନଙ୍କଠାରୁ ବୟସ-ବଳରେ ଯେପରି ଅଧିକମାନ-ସମ୍ମାନ ପାଇଥାନ୍ତି, ଏମାନେ ସାହିତ୍ୟ-ସଂସାରରେ ନୂତନ ଲେଖକ-ମାନଙ୍କଠାରୁ ସେହିପରି ସମ୍ମାନ ପାଇବାରେ ଅସଙ୍ଗତତା କିଛି ନାହିଁ । ୧୯୩୬ ସାଲଠାରୁ ଯେଉଁ ନୂତନ ସାହିତ୍ୟିକ ଗୋଷ୍ଠୀ ନୂତନ ପ୍ରାଣରେ ସୃଷ୍ଟି କର୍ମରେ ଆତ୍ମ-ନିୟୋଗ କରିଛି ତା ଆଖିରେ ପୂର୍ବୋକ୍ତ ବୟୋଜ୍ୟେଷ୍ଠ ଲେଖକମାନେ ସେମାନଙ୍କ ଅତୀତ ଶିଳ୍ପ-ଗୌରବ ପାଇଁ ନମସ୍ୟ ହୋଇପାରନ୍ତି; କିନ୍ତୁ ଅତୀବ ପରିତାପର ବିଷୟ ଯେ ସାଧାରଣ ମାନବୀୟ ଦୁର୍ବଳତା ପରି ଏଇ ପ୍ରଥମ ବିଭାଗର ଲେଖକମାନେ ଆଜ ଯାହା ଲେଖୁଛନ୍ତି ସେଥିପାଇଁ ମଧ୍ୟ ଲୋକ ଦୃଷ୍ଟିରେ ବୃହତ୍ତର ଆସନ ଦାବି କରି ବସୁଛନ୍ତି । ଫଳରେ ଏଇମାନେହିଁ ସାର୍ଥକ ସମୀକ୍ଷାକୁ ବିଭ୍ରାନ୍ତ କରିବାରେ ସହାୟକ ହୋଇ ଉଠୁଛନ୍ତି । (ଖ) ୧୯୩୬ ସାଲର କିଛି ପୂର୍ବ ଓ ତାପରେ ଯେଉଁମାନେ ସାହିତ୍ୟ କ୍ଷେତ୍ରରେ ପ୍ରବେଶ କରିଛନ୍ତି ସେଇମାନଙ୍କ କଳାତ୍ମ ସୃଷ୍ଟିରେ ୧୯୩୬-୫୧ ସାଲର ସାହିତ୍ୟ ଯଥାର୍ଥତଃ ପରିପୁଷ୍ଟି

ଲାଭ କରିଛନ୍ତି । କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ଗୋଦାବରୀଶ ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର, ରାଜକିଶୋର ପଟ୍ଟନାୟକ, ରାଜକିଶୋର ରାୟ ପ୍ରଭୃତି ଗଳ୍ପ ଓ ଉପନ୍ୟାସରେ; କାଳିଚରଣ ପଟ୍ଟନାୟକଙ୍କ ପରି ଲେଖକ ନାଟକ ରାଜ୍ୟରେ; ଅନନ୍ତ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ରାଧାମୋହନ ଗଡ଼ନାୟକ, ମନମୋହନ ମିଶ୍ର ପ୍ରଭୃତି କବିତା ରାଜ୍ୟରେ ଅପୂର୍ବ କୃତିତ୍ୱ ଅର୍ଜନ କରିଛନ୍ତି । ଏମାନଙ୍କ ମଧ୍ୟରୁ କାହାରି କାହାରି ପ୍ରତିଭା ଆଜି ଶେଷ ଅବସ୍ଥାରେ ମଧ୍ୟ ପହଞ୍ଚିଗଲାଣି । କିନ୍ତୁ ଏଥିରୁ ଅଧିକାଂଶ ନିଜର ଅମଳିନ ପ୍ରତିଭା-ଦୀପ୍ତିରେ ଆଜି ମଧ୍ୟ ଭବିଷ୍ୟତ୍ ସଂସାର ସର୍ଜନାରେ ମନପ୍ରାଣ ଢାଳି ଦେଇଛନ୍ତି । ଏମାନଙ୍କ ପ୍ରକାଶୋନ୍ମୁଖୀ ପ୍ରତିଭାର ଆଦି ଭାଗ ସୁସ୍ପଷ୍ଟ, ମଧ୍ୟଭାଗ ସୃଷ୍ଟି ଗୌରବରେ ମହୀୟାନ ଓ ଶେଷ ଭାଗ ଭବିଷ୍ୟତ୍‌ର ଅନ୍ଧକାର ଗର୍ଭରେ ଲୁକାୟିତ ।

(ଗ) ଗତ ବାର ବର୍ଷ କିମ୍ବା ତାର କିଛି ପୂର୍ବ ଓ ପର ସମୟରେ ଆବିର୍ଭୂତ ହୋଇଥିବା ଲେଖକ ଶ୍ରେଣୀ ; ଏମାନଙ୍କ ଭିତରୁ ଅଧିକାଂଶ ଆଜି ଗୋଟିଏ ପ୍ରସ୍ତୁତି ସ୍ତରରେ ଦଣ୍ଡାୟମାନ । ଏମାନଙ୍କ ସୃଷ୍ଟିର ଆଦିକାଳ ସୁସ୍ପଷ୍ଟ, କିନ୍ତୁ ଅଧିକାଂଶଙ୍କର କୃତି ଘୋର ସନ୍ଦେହାଚ୍ଛନ୍ନ ଓ ଅମୀମାଂସିତ । ଏମାନଙ୍କର ଭବିଷ୍ୟତ୍ ମଧ୍ୟ ଆଶା ନୈରାଶ୍ୟରେ ବିଜଡ଼ିତ । ଏମାନଙ୍କ ସୃଷ୍ଟିର ଆଦି କାଳଟି ବଳିଷ୍ଠ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇ ନଥିବାରୁ ଏମାନଙ୍କ ଉପରେ କିଛି ଅଭିମତ ଦେବା ସର୍ବାଦୌ ଅସଙ୍ଗତ, ଅବାଞ୍ଛନୀୟ ଓ ଅସାମୟିକ । ଭବିଷ୍ୟତ୍ ଆଶାର ଉଜ୍ଜ୍ୱଳ ଆଲୋକରେ ପ୍ରଦୀପ୍ତ ହେବା ଏମାନଙ୍କ ପକ୍ଷରେ ଏକାନ୍ତ ଶୋଭନୀୟ । ଦିନ ଆସିବ ଯେତେବେଳେ ଏଇମାନେହିଁ

ସୃଷ୍ଟି କରିବେ ଆସନ୍ତା ସାହିତ୍ୟର ସୁବର୍ଣ୍ଣ ସୌଧ । ସେତେବେଳର ସମାଲୋଚକ ସେମାନଙ୍କ ସାହିତ୍ୟ ଅନୁଶୀଳନ ବେଳେ ଲୋଡ଼ିବ ଏଇ ଆଦି କାଳର ସେମାନଙ୍କ ରଚନା, ଯାହାକୁ ପୃଷ୍ଠଭୂମି କରି ସେ ଯଥାର୍ଥ ସମୀକ୍ଷାରେ କୃତକାର୍ଯ୍ୟ ହୋଇ ପାରିବ । ଏମାନଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ସ୍କୁଲ୍, କଲେଜ ଛାତ୍ର କିମ୍ବା ବିଶ୍ୱ-ବିଦ୍ୟାଳୟରୁ ସଦ୍ୟ ସମାଗତ କୌଣସି କୌଣସି ଅଳ୍ପ ବେତନ ଭୋଗୀ ମସୀଜୀବୀ । ଏମାନଙ୍କର କୃତି ବର୍ତ୍ତମାନ ସମ୍ମାନର ଅଧିକାରୀ ହୋଇ ନ ପାରିଲେହେଁ ଏମାନେ ଯେ ଜାତିର ଏକମାତ୍ର ଭବିଷ୍ୟତ୍ର ଆଶା ଭରସାର ଉଜ୍ଜ୍ୱଳ ଆଲୋକ ସଦୃଶ ତାହା ଅସ୍ୱୀକାର କରି ହେବନାହିଁ ।

(ଘ) ବର୍ତ୍ତମାନ ଆଉ ଏକ ଶ୍ରେଣୀର ଲେଖକ ଅଛନ୍ତି ଯେଉଁମାନଙ୍କର ସାହିତ୍ୟ-ସାଧନାର ଆୟୁକାଳ ପ୍ରାୟ ଦଶ ବାର ବର୍ଷ କିମ୍ବା ତା ଠାରୁ କମ୍ । ସାଧନା-ସମୟର ବିଶିଷ୍ଟ ଗୌରବ ଏମାନଙ୍କର ନଥିଲେହେଁ ଏମାନେ ଅତି ଅଳ୍ପ ସମୟ ଭିତରେ ନିଜର ସୃଷ୍ଟି-ପ୍ରତିଭା ଓ ନିରବଚ୍ଛିନ୍ନ ଅଧ୍ୟବସାୟ ବଳରେ ଯେଉଁ ସାହିତ୍ୟିକ ଯଶ ଅର୍ଜ୍ଜନ କରିଛନ୍ତି ତାହା ଏକାନ୍ତ ବିସ୍ମୟକର । ସମୟ ଦୃଷ୍ଟିରୁ ଏମାନେ 'ଗ' ଶ୍ରେଣୀର ଅନ୍ତର୍ଭୁକ୍ତ ହେଲେହେଁ କୃତିର କୃତିତ୍ୱ ଦୃଷ୍ଟିରୁ ଏମାନେ 'ଖ' ଶ୍ରେଣୀରେ ଗଣ୍ୟ ହେବାର ଉପଯୁକ୍ତ । ଗୋଟିଏ ଉଦାହରଣ ଦେଖନ୍ତୁ । ସୁରେନ୍ଦ୍ର ମହାନ୍ତିଙ୍କ ସାହିତ୍ୟ-ସେବା ପ୍ରାୟ ଦଶ ବାର ବର୍ଷରୁ ବେଶି ନୁହେଁ । କିନ୍ତୁ ୧୯୩୬ ସାଲରୁ ଲେଖି ଆସୁଥିବା ଗୋପିନାଥ ମହାନ୍ତି, ରାଜକିଶୋର ରାୟଙ୍କ ଗଳ୍ପମାନଙ୍କ ସହିତ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପର ଟେକ୍‌ନିକ୍ ଓ ତାର ଆତ୍ମିକ-ସୌନ୍ଦର୍ଯ୍ୟ ତୁଳନାମୂଳକ ଭାବେ ପର୍ଯ୍ୟାଲୋଚନା କଲେ ଆମେ ଶେଷୋକ୍ତ ଲେଖକଙ୍କ ଗଳ୍ପରେ

ବିଶେଷ ବିମୁଗ୍ଧ ହୋଇଥାଉଁ । ଏ ଅଭିମତ କେବଳ ଗଳ୍ପ କ୍ଷେତ୍ରରେ ସତ୍ୟ ନୁହେଁ । ସମାଲୋଚନା, ନାଟକ, ଏକାଙ୍କିକା, ଉପନ୍ୟାସ କ୍ଷେତ୍ରରେ ମଧ୍ୟ ଏଇ ଅଳ୍ପ ସମୟ ମଧ୍ୟରେ କେତେକ ଲେଖକ ଅପୂର୍ବ କୃତିତ୍ୱ ଅର୍ଜନ କରିଥିବାର ଦେଖିବାକୁ ମିଳନ୍ତି । କିନ୍ତୁ ଏପରି ଲେଖକଙ୍କ ସଂଖ୍ୟା ଅତି କମ୍ । ଏମାନଙ୍କ ସାଧନାର ଆଦି ଭାଗ ଯେପରି ଉଜ୍ଜ୍ୱଳମୟ ସେମାନଙ୍କ ଭବିଷ୍ୟତ ମଧ୍ୟ ସେମିତି ସଂପୂର୍ଣ୍ଣ ସନ୍ଦେହଶୂନ୍ୟ ।

ସମୟର ନିଗଡ଼ ପ୍ରକୋଷ୍ଠ ଭିତରେ ଲେଖକମାନଙ୍କୁ ଚିହ୍ନିତ କରି ସେମାନଙ୍କ କୃତିର ଅନ୍ତଃସୌନ୍ଦର୍ଯ୍ୟ ଅବଧାରଣ କରିବା ଯଦି ଓ ନିରାପଦ ସମାଲୋଚନା ପଦ୍ଧତି ନୁହେଁ, ତଥାପି ପ୍ରତିଭାର ବିକାଶ ପାରିପାର୍ଶ୍ୱିକ ଅବସ୍ଥା ଓ କାଳଧାରା ଦ୍ୱାରା ବହୁ ପରିମାଣରେ ନିୟନ୍ତ୍ରିତ ହେଉଥିବାରୁ ଏପରି ବିଭାଗୀକରଣରେ ବିଶେଷ ଅଯୌକ୍ତିକତା ଅଛି ବୋଲି ମନେ ହୁଏନାହିଁ । କିନ୍ତୁ ବର୍ତ୍ତମାନ କ୍ଷେତ୍ରରେ କାଳାନୁଯାୟୀ ଏଇ ଲେଖକ-ବିଭାଗର ପ୍ରକୃତ ଲକ୍ଷ୍ୟ ହେଉଛି ଆଧୁନିକ ଓଡ଼ିଆ ସାହିତ୍ୟର ଭବିଷ୍ୟତ ଉପରେ କିଛି ଆଲୋକ-ପାତ କରିବା । ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ସହିତ ସମତାଳରେ ଗତି କରୁଥିବା ଓଡ଼ିଆ ସାହିତ୍ୟର ଭବିଷ୍ୟତ ଓ ତାର ଯଥାର୍ଥ ରୂପରେଖ ବିଷୟରେ କୌଣସି ନିଃସନ୍ଦେହ ଅଭିମତ, ଜ୍ୟୋତିଷର ଭବିଷ୍ୟତବାଣୀ ପରି, ପ୍ରକାଶ କରିବା ଅସଙ୍ଗତ ଓ ଅପ୍ରାସଙ୍ଗିକ ହେଲେହେଁ ଏ ସାହିତ୍ୟ ଭବିଷ୍ୟତରେ ଉନ୍ନତି ଦିଗରେ ଗତିଶୀଳ ହେବ, ଏପରି ଅନୁମାନ ଯେ ବାସ୍ତବ ସତ୍ୟ ତାହା ଉପରୋକ୍ତ ଗୁଟେଟି କବି ଶ୍ରେଣୀରୁ ଆମେ ସହଜରେ ଉପଲବ୍ଧି କରିପାରିବୁ । ତାର କାରଣ, ଏଇ ତିନି ବିଭାଗ ମଧ୍ୟରୁ କେବଳ ପ୍ରଥମଟିକୁ ବାଦଦେଲେ ଅନ୍ୟ

ତିନୋଟି ବିଭାଗ ବିଶେଷତଃ ଦ୍ୱିତୀୟ ବିଭାଗର ଅଧିକାଂଶ ଲେଖକଙ୍କର ପ୍ରତିଭା ଆଜି ମଧ୍ୟ ମ୍ଳାନପ୍ରଭ ହୋଇନାହିଁ । ଶେଷୋକ୍ତ ଦୁଇ ବିଭାଗର ଲେଖକମାନଙ୍କ ସଂକ୍ଷିପ୍ତ ଜୀବନୀର ଅନୁମାରକ ମାତ୍ର ହେଉଛି ।

ଊନବିଂଶ ଶତାବ୍ଦୀର ପ୍ରଥମ ୬୦ ବର୍ଷ କାଳ ଓଡ଼ିଆ ଗଣଜୀବନ ପକ୍ଷରେ ଏକ ଘନଘୋର ଅନ୍ଧକାର ଯୁଗ । ଶାସକ ଶ୍ରେଣୀର ନିର୍ମମ ଅପଶାସନରେ ଏ ଜାତି ସେତେବେଳେ ହେଉଥିଲା ଶୋଷିତ ଓ ନିଷ୍ପେଷିତ । ଏ ଶୋଷଣ ଓ ନିଷ୍ପେଷଣ ତୀବ୍ରତା ଓ ବ୍ୟାପକତା ମଧ୍ୟ ଥିଲା ଅସୀମ । କାରଣ ଶୋଷଣ ବିରୁଦ୍ଧରେ ମସ୍ତକ ଉତ୍ତୋଳନ କରିବାର ଶିକ୍ଷା ବା ସାମର୍ଥ୍ୟ ଏ ଜାତିର ସେତେବେଳେ ନ ଥିଲା । ୧୮୬୫-୬୬ ସାଲର ନଅଙ୍କ ଦୁର୍ଭିକ୍ଷ, ବିଶେଷତଃ ୧୮୬୮-୭୦ ସାଲର ଓଡ଼ିଆ ଭାଷା ଉଚ୍ଛେଦ-ଆନ୍ଦୋଳନ, ଏ ଉଭୟ ଅବିସ୍ମରଣୀୟ ଘଟଣା ଜାତି ଚିତ୍ତରେ ସୃଷ୍ଟି କରିଥିଲା ସାମୟିକ ଚିତ୍ତ-ବିପ୍ଳବ । ଏ ବିପ୍ଳବାତ୍ମକ ମନୋବୃତ୍ତି ପାଠ୍ୟପୁସ୍ତକ ରଚନା ତଥା ଆଧୁନିକ ଶିକ୍ଷା ଓ ସାହିତ୍ୟର ପରିବୃଦ୍ଧି ଦିଗରେ ଯଥେଷ୍ଟ ସହାୟକ ହୋଇ ଉଠିଥିଲା । ଏ ଚିତ୍ତବିପ୍ଳବ, କିନ୍ତୁ, ସେତେବେଳେ ଗୋଟିଏ ଦୁଇଟି ସହରରେ ବାସ କରୁଥିବା କେତେକ ମୁଷ୍ଟିମେୟ ଶିକ୍ଷିତ ଲୋକଙ୍କଠାରେ ଆବଦ୍ଧ ଥିଲା । ଅଗଣିତ ଜନତାର ଜୀବନ-ସ୍ରୋତ ସହିତ ଏହାର କୌଣସି ସମ୍ପର୍କ ନ ଥିଲା । ଶାସିତର ଉନ୍ନତି କଳ୍ପେ ଶାସକର କୌଣସି ବିଧିବଦ୍ଧ କର୍ମପ୍ରବଣତାଭାବ ଦେଖାଯାଉ ନଥିବାରୁ ଜନତାର ଜୀବନ-ପରିସର କୌଣସି ପରିବର୍ତ୍ତନର ସମ୍ମୁଖୀନ ହୋଇ ନ ଥିଲା । ଏଇ ଅପରି-ବର୍ତ୍ତନୀୟ ସାମାଜିକ ଜୀବନ ଭିତରେ କେତେକ ପାଦ୍ରୀ ଓ ବ୍ରାହ୍ମଙ୍କୁ କେନ୍ଦ୍ରକରି ସମାଜ-ସଂସ୍କାର ନାମରେ ଏକ କ୍ଷୀଣ ସଂଘର୍ଷ ସୃଷ୍ଟି

ହୋଇଥିଲା । ଆଧୁନିକ ଶିକ୍ଷା-ସଭ୍ୟତା-ବର୍ଜିତ ଓ ସମାଜ-ବୋଧ ରହିତ ଏ ଜାତିର ହୃଦୟ ଯେପରି ସ୍ପନ୍ଦନଶୂନ୍ୟ ଥିଲା ଆଧୁନିକ ଓଡ଼ିଆ ସାହିତ୍ୟର ଆଦି ଯୁଗଟି ସେଇପରି ପ୍ରାୟ ବୈଚିତ୍ର୍ୟଶୂନ୍ୟ ହୋଇ ପଡ଼ିଥିଲା ।

୧୮୯୧ ସାଲ ପରେ ବିଭିନ୍ନ ପତ୍ରପତ୍ରିକା ବିଶେଷତଃ ଇନ୍ଦ୍ରଧନୁ-ବିଜୁଳି (୧୮୯୩-୯୪) ସାହାଯ୍ୟରେ ପ୍ରାଚୀନ-ଆଧୁନିକ ସାହିତ୍ୟ-ମନୋବୃତ୍ତିର ଲେଖକମାନେ ପୁନର୍ବାର ଏକ ଅଶୋଭନୀୟ ତୀବ୍ର ସଂଘର୍ଷର ସୂତ୍ରପାତ କଲେ । ତା ର ପରିଣତି ସ୍ୱରୂପ ଆଧୁନିକ ସାହିତ୍ୟ ଅନ୍ୟ ଏକ ସ୍ୱତନ୍ତ୍ର ଗତିପଥରେ ଧାବିତ ହେଲା । ୧୯୨୦ ସାଲ ଭିତରେ ଉତ୍କଳସମ୍ମିଳନୀ ଓ ଉତ୍କଳସମାଜ (୧୯୦୩)ର ପ୍ରତିଷ୍ଠା, ବଙ୍ଗବିଚ୍ଛେଦ ଆନ୍ଦୋଳନ (୧୯୦୫), ବିହାର ଓଡ଼ିଶା ପ୍ରଦେଶ ଗଠନ (୧୯୧୨), ପ୍ରଥମପୃଥିବୀମହାସମର (୧୯୧୪-୧୮) ପ୍ରଭୃତି ଘଟଣା ହେତୁ ଏ ଦେଶରେ କିଛି ପରିବର୍ତ୍ତନ ଘଟିଥିଲେ ସୁଦ୍ଧା ସାହିତ୍ୟରେ ଆଶାନୁରୂପ ପରିବର୍ତ୍ତନସମ୍ପାଦିତ ହୋଇ ପାରି ନଥିଲା । ପୂର୍ବର ସାମାଜିକ ଅବସ୍ଥା ପରି ଏ ସମୟରେ ମଧ୍ୟ ଗଣ-ଜୀବନ ସାମୂହିକଭାବେ ପରିବର୍ତ୍ତିତ ହୋଇଯିବାର ସମ୍ଭାବନା ନ ଥିଲା । କାରଣ ଯେଉଁସବୁ ଘଟଣା ଯୁବଚିତ୍ତକୁ ସ୍ୱତନ୍ତ୍ରଭାବେ ଆନ୍ଦୋଳିତ କରିବା କଥା ତାହା ସହିତ ଓଡ଼ିଆଗଣଜୀବନର କୌଣସି ଯୋଗସୂତ୍ର ନଥିଲା । ପ୍ରଥମ ଅସହଯୋଗଆନ୍ଦୋଳନ ଓ ରବୀନ୍ଦ୍ରନାଥଙ୍କ ପ୍ରତିଭା-ପରିପ୍ରକାଶ ହେତୁ ଏ ସାହିତ୍ୟରେ ଅନ୍ୟ ଏକ ନୂତନ ସ୍ରୋତ ୧୯୨୧ ସାଲରୁ ସୃଷ୍ଟି ହୋଇଥିଲେହେଁ ୧୯୩୫ ସାଲ ପର୍ଯ୍ୟନ୍ତ ଗଣଜୀବନ କୌଣସି ପ୍ରତ୍ୟକ୍ଷ ସାମାଜିକ ସଂଗ୍ରାମ ଭିତରକୁ ଆସିବାର ସୁବିଧା ପାଇ ନଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ (୧୯୩୬) ଗଠନ ଜାତି ଚିତ୍ତରେ ଯେଉଁ ଅଭିନବ ଉତ୍ତେଜନା ସୃଷ୍ଟି

କରିଥିଲା ତାହା ଦ୍ୱିତୀୟ ମହାସମର (୧୯୩୯) ଜନିତ ସାମାଜିକ ଓ ଅର୍ଥନୈତିକ ଅବ୍ୟବସ୍ଥା ସହିତ ମିଳିତ ହୋଇ ଜାତିକୁ ଏକ ଗଭୀରତର ଜୀବନ-ସଂଗ୍ରାମର ସମ୍ମୁଖୀନ କରାଇ ଦେଲା । ମୂଳତଃ ଏତିକି କୁହାଯାଇପାରେ ଯେ ୧୯୪୦ ସାଲ ପୂର୍ବରୁ ଏ ଦେଶରେ ଯେଉଁ ସାମାଜିକ ତଥା ରାଷ୍ଟ୍ରୀୟ ପରିବର୍ତ୍ତନ ଘଟିଛି ତାହା ସାମୂହିକ ଭାବେ ଗଣଜୀବନକୁ ପ୍ରଭାବିତ ତଥା ନିୟନ୍ତ୍ରଣ କରିବାକୁ ସମର୍ଥ ହୋଇନାହିଁ । ଦ୍ୱିତୀୟ ମହାସମର ପରଠାରୁ ଏ ପରିବର୍ତ୍ତନ ସ୍ପଷ୍ଟ ଲକ୍ଷ୍ୟ କରାଯାଇପାରେ । ୧୯୪୨ ସାଲର ଅଗଷ୍ଟ ଆନ୍ଦୋଳନ ଓ ସର୍ବଶେଷରେ ୧୯୪୭ ସାଲ ଅଗଷ୍ଟରେ ଭାରତର ସ୍ୱାଧୀନତା-ପ୍ରାପ୍ତି, ଏଇ ଉଭୟ ଐତିହାସିକ ଘଟଣା ପୂର୍ବୋକ୍ତ ପରିବର୍ତ୍ତନକୁ ଆହୁରି ବେଶୀ ବେଗଗାମୀ କରାଇ ଦେଇଛନ୍ତି । ଗତ ବାରବର୍ଷ ଭିତରେ ସ୍ୱାଧୀନ ଭାରତର ନାଗରିକ ଜୀବନ ମଧ୍ୟ ଏକ ଅଭୂତପୂର୍ବ ଅନ୍ତର୍ବିପ୍ଳବ ଭିତରେ ଯେପରି ଗତି କରିଛି ତାହା ଏ ଜାତିର ଇତିହାସରେ ସଂପୂର୍ଣ୍ଣ କଳ୍ପନାତୀତ ଥିଲା । ରାଜନ୍ୟବର୍ଗଙ୍କ ସ୍ୱର୍ଣ୍ଣ ସିଂହାସନ ଆଜି ଟଳିପଡ଼ିଛି । ଜମିଦାରୀ ଉଚ୍ଛେଦ ପରେ ଜମିଦାର-ମାନଙ୍କ ଅପଶାସନର ପରମ୍ପରାରେ ପୂର୍ଣ୍ଣଚ୍ଛେଦ ପଡ଼ିଯାଇଛି । ପରମ୍ପରାଗତ ଧନୀକ ଶ୍ରେଣୀର ବିଲୋପ ସାଧନ ହେତୁ ସାମାଜିକ ଜୀବନ-ଧାରାରେ ଏକ ନୂତନ ମୂଲ୍ୟବୋଧ ଅନୁଭୂତ ହେଉଛି । ଆଧୁନିକ ଯୁଗର ଭୂସଂସ୍କାର ନିୟମ ଓ ବିନୋବାବାଭେଙ୍କ ଭୂଦାନ ଆନ୍ଦୋଳନ ଏ ଦେଶର ମଧ୍ୟବିତ୍ତ ଶ୍ରେଣୀକୁ ଧ୍ୱଂସ କରି ପୂର୍ବୋକ୍ତ ନୂତନ ମୂଲ୍ୟବୋଧକୁ ଆହୁରି ବେଶି ଶାଣିତ ଓ ଗଭୀରତର କରି ଦେଇଛି । ରାଜା, ଜମିଦାର ଓ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ, ଏଇ ତିନୋଟି ଶ୍ରେଣୀ ୧୮୭୦ ସାଲରୁ ଦେଶର ସର୍ବାଙ୍ଗୀନ ମଙ୍ଗଳ ସାଧନ ଉଦ୍ଦେଶ୍ୟରେ ମନପ୍ରାଣ ଢାଳି ଦେଇଥିଲେ । ଏମାନଙ୍କ

ମଧ୍ୟରୁ ଶେଷୋକ୍ତ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ଚିନ୍ତା ଓ କାର୍ଯ୍ୟରେ ବିଶେଷତଃ ସାହିତ୍ୟ କ୍ଷେତ୍ରରେ ଯଥାର୍ଥ ନେତୃତ୍ୱ ଦେଇଥିଲେ । ଗତ ଶତାବ୍ଦୀରେ ଏ ଦେଶର ଅଗଣିତ ଜନତା ଓ ନିମ୍ନମଧ୍ୟବିତ୍ତ ଶ୍ରେଣୀ ଆଧୁନିକ ଶିକ୍ଷା-ସଭ୍ୟତାଲୋକରୁ ସମ୍ପୂର୍ଣ୍ଣ ବଞ୍ଚିତ ହୋଇ ରହିଥିଲେ । ଗତ ବାର ବର୍ଷ ଭିତରେ ଆଇନ ବଳରେ ଉପରୋକ୍ତ ଦେଶସେବୀ ଦୁଇ ଶ୍ରେଣୀର ବିଲୋପ ସାଧନ ଓ ଉଚ୍ଛିଷ୍ଟ ଶ୍ରେଣୀ (ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀ)ର କ୍ରମଶଃ ଲୋପ ପାଇଯିବାର ନିୟମ ପ୍ରଣୀତ ହେବା ହେତୁ ଏ ଦେଶର ଅଗଣିତ ଜନତା ଚିତ୍ତରେ ଉନ୍ନତି କରିବାପାଇଁ ପ୍ରବଳ ଆକାଂକ୍ଷା ଜାଗ୍ରତ ହୋଇଉଠିଛି । ଅର୍ଥନୈତିକ ଓ ପ୍ରତିଷ୍ଠିତ ସାମାଜିକ ବ୍ୟବସ୍ଥାର ପରିବର୍ତ୍ତନ, ଫଳରେ ସାହିତ୍ୟ ସୃଷ୍ଟିକାରୀ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ହତାଶ ମନୋଭାବ, ସର୍ବଶେଷରେ ସୃଷ୍ଟି କରିବାରେ ସମ୍ପୂର୍ଣ୍ଣ ଅସମର୍ଥ ଜନତାର ଚିତ୍ତ-ଦାରିଦ୍ର୍ୟ—ଏ ସମସ୍ତ ଆଜିର ସାହିତ୍ୟକୁ ନିୟନ୍ତ୍ରଣ କରୁଥିବାର ଦେଖିବାକୁ ମିଳେ । ଗତ କେତେବର୍ଷ ଧରି ଜୀବନ ଉପଭୋଗର ମାନଦଣ୍ଡରେ ମଧ୍ୟ ପରିବର୍ତ୍ତନ ପରିଲକ୍ଷିତ ହେଲାଣି । ଯେଉଁ ଜିନିଷର ନାମ ଲୋକେ ଦଶ ପନ୍ଦର ବର୍ଷ ତଳେ ଶୁଣି ନଥିଲେ ସେଇ ଜିନିଷ ସବୁ ଆଜିର ଜୀବନରେ ଅତ୍ୟାବଶ୍ୟକ ରୂପେ ଦେଖା ଯାଉଛନ୍ତି । କିନ୍ତୁ ଏମାନଙ୍କୁ କିଣିବା ପାଇଁ ଲୋକଙ୍କ ପାଖରେ ଯଥେଷ୍ଟ ଅର୍ଥ ନାହିଁ । ଆର୍ଥିକ ଅବନତି ସଙ୍ଗେ ଜୀବନ ମାନଦଣ୍ଡର ଉନ୍ନତି ଲୋକଙ୍କ ଚିତ୍ତରେ ଘୋର ଅସନ୍ତୋଷ ସୃଷ୍ଟିକରି ଦ୍ୱନ୍ଦ୍ୱାତ୍ମକ ଚିତ୍ତବୃତ୍ତି ଗଢ଼ିବାରେ ସହାୟକ ହୋଇ ଉଠିଛି । ଆତ୍ମ-ଅସ୍ତିତ୍ୱର ପ୍ରତିଷ୍ଠା ପାଇଁ ଆଜି ପ୍ରତ୍ୟେକ ଲେଖକ ସଜାଗ ହୋଇ ଉଠିଛନ୍ତି । ତାର କାରଣ ଅର୍ଥନୈତିକ, ସାମାଜିକ, ଓ ରାଜନୈତିକ ପରିସ୍ଥିତିର ଶରବ୍ୟ ହୋଇପଡ଼ୁଛି ଆଜିର

ଲେଖକ । ଫଳରେ ସେ ହେଉଛନ୍ତି ବିପ୍ଳବୀ । ପାରିପାର୍ଶ୍ୱିକ ପରିସ୍ଥିତି ଓ ସମଗ୍ର ପୃଥିବୀର ଘଟଣାବଳୀ ଏହି ଆତ୍ମ-କେନ୍ଦ୍ରିକ-ବିପ୍ଳବୀ-ଚିତ୍ତବୃତ୍ତିକୁ ଆହୁରି ଅଧିକ ତୀବ୍ରତର କରିଦେବାରେ କମ୍ ସାହାଯ୍ୟ କରୁନାହାନ୍ତି ।

ଏ ଯାନ୍ତ୍ରିକ ଯୁଗରେ ବହୁବିଧ ବୈଜ୍ଞାନିକ ଆବିଷ୍କାର ଏ ଦୁନିଆର ରୂପ ପରିବର୍ତ୍ତନ କରିଦେଇଥିଲେହେଁ ଏ ଆବିଷ୍କାରର ଯଥାର୍ଥ ପ୍ରଭାବ ଓଡ଼ିଶାରେ ୧୯୪୦ ସାଲ ପରେ ଧୀରେ ଧୀରେ ଅନୁଭୂତ ହୋଇଛି । ବିଜ୍ଞାନ ସହ ଜ୍ଞାନ-ରାଜ୍ୟର ଅନ୍ୟାନ୍ୟ ନୂତନ ନୂତନ ଆବିଷ୍କାର, ଯଥା :—ମନୋବିଜ୍ଞାନ ପ୍ରଭୃତି, ବିଭିନ୍ନ ରାଜନୈତିକ ମତବାଦ ଯଥା :—ସାମ୍ୟବାଦ ପ୍ରଭୃତି, ବିଭିନ୍ନ ସାହିତ୍ୟିକ ମାନଦଣ୍ଡ ଯଥା :—ସରିଏଲିଜମ୍, ରିଯୁଲିଜମ୍, ଆଇଡ଼ିଆଲିଜମ୍ ପ୍ରଭୃତି ୧୯୫୦ସାଲରୁ ଏ ଦେଶର ସର୍ବହରା, ବେକାର ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ଚିତ୍ତରେ ଏକ ନୂତନ ଜୀବନ ଜିଜ୍ଞାସା ଓ ଜୀବନାଦର୍ଶର ଗଭୀର ରେଖା ଅଙ୍କନ କରିଦେଇଛି । ଦେଶର ବୃହତ୍ତର ସମସ୍ୟା ତଥା ସମଗ୍ର ପୃଥିବୀର ଚିନ୍ତା, ଆଦର୍ଶ ଓ ଉଦ୍‌ଭାବନ ଲେଖକ ଜୀବନର କ୍ଷୁଦ୍ର ପରିସର ଭିତରେ ପ୍ରତିଫଳିତ ହୋଇଉଠୁଛି । ତେଣୁ ଗୋଟିଏ ସ୍ଥାନରେ ବାସକରି ସେ ସମଗ୍ର ଦେଶ ଓ ପୃଥିବୀ ସହିତ ଅଖଣ୍ଡ ସମ୍ପର୍କ ପ୍ରତିଷ୍ଠା କରିବାକୁ ସମର୍ଥ ହେଉଛି । ଫଳରେ ନିଜର ହା ହୁତାଶ ମନୋଭାବ, ଦୁଃଖ-ଦୈନ୍ୟ, ଶୋଷଣ-ନିଷ୍ପେଷଣ ଯାହା ଆଜି ତା ସାହିତ୍ୟର ଆଙ୍ଗିକ ରୂପେ ସ୍ଥାନ ପାଉଛି ତାହା ପୃଥିବୀର ଶ୍ରେଷ୍ଠ ସାହିତ୍ୟାଦର୍ଶ ଦ୍ୱାରା ପ୍ରଭାବିତ ହୋଇଉଠୁଛି । ସାହିତ୍ୟ-ପରିବୃଦ୍ଧିର ଏହି ଅପୂର୍ବ ବାତାବରଣ ଅତୀତ ଓଡ଼ିଆ ସାହିତ୍ୟର ଭାଗ୍ୟରେ କେବେ ଦେଖାଦେଇଥିଲି ବୋଲି ମନେହୁଏନାହିଁ । ପୃଥିବୀ

ସାହିତ୍ୟ ସହ ବ୍ୟାପକ ସହଯୋଗ ପ୍ରତିଷ୍ଠା ଓ୍, ଲେଖକମାନଙ୍କ ଦୃଷ୍ଟିକୋଣର ପରିପ୍ରସାର ପ୍ରଭୃତି କାରଣ ସ୍ୱାଧୀନତା-ପର ସାହିତ୍ୟକୁ ଯେପରି ବିଶିଷ୍ଟ ରୂପ-ସମ୍ପଦ ଓ ବଳିଷ୍ଠ ଭିତ୍ତି ଭୂମିରେ ଉପସ୍ଥାପନ କରୁଛି ସେପରି ଅତୀତ ସାହିତ୍ୟରେ କେବେ ଘଟି ନଥିଲା ।

ଦେଶର ସ୍ୱାଧୀନତା ପରେ ପ୍ରତିଭାବାନ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ମଧ୍ୟରେ, ଭାରତୀୟ ଅନ୍ୟାନ୍ୟ ଭାଷାଭାଷୀ ଲେଖକ ମାନଙ୍କ ସହ ସମତାଳ ପକାଇ, ନୂତନ ସୃଷ୍ଟି କରିବା ପାଇଁ ଅଦମ୍ୟ ଉତ୍ସାହ ଦେଖା ଯାଇଛି । ସ୍ୱତନ୍ତ୍ର ଉତ୍କଳ ବିଶ୍ୱ ବିଦ୍ୟାଳୟ ସ୍ଥାପନ (୧୯୪୩) ହେତୁ ଶିକ୍ଷାର ବହୁଳ ପ୍ରସାର ତଥା ଶିକ୍ଷିତ ଶ୍ରେଣୀର ଅଭିବୃଦ୍ଧି ଘଟିଛି । ସାହିତ୍ୟ ସୃଷ୍ଟିପାଇଁ ଏଇ ସମୟରେ 'ନବଭାରତ' ଓ 'ଉତ୍କଳ ସାହିତ୍ୟ'ର ପୁନରଭ୍ୟୁଦୟ ହୋଇଛି । 'ଡଗର'ର ନୂତନ ମାସିକ ରୂପ ସହିତ 'ଝଙ୍କାର', 'ନବଜୀବନ' ପ୍ରଭୃତି ବହୁ ସାହିତ୍ୟ-ମାସିକ ପତ୍ରିକା ଜନ୍ମଲାଭ କରିଛନ୍ତି । ଏଥି ମଧ୍ୟରୁ "ଝଙ୍କାର" ହିଁ ଏକ ଉନ୍ନତ ଧରଣର ପତ୍ରିକା ରୂପେ ବହୁ ଲୋକଙ୍କ ଦ୍ୱାରା ଗୃହୀତ । ଡକ୍ଟର ହରେକୃଷ୍ଣ ମହତାବଙ୍କ ବଳିଷ୍ଠ ସଂଗଠନ ଶକ୍ତି ହେତୁ ଏଇ ପତ୍ରିକାଟି ଅନେକ ନୂତନ ସାହିତ୍ୟିକଙ୍କୁ ତିଆରି କରିବାରେ ସମର୍ଥ ହୋଇଛି । ଓଡ଼ିଶା ସାହିତ୍ୟ ଏକାଡ଼େମୀର ପ୍ରତିଷ୍ଠା, ଭାରତୀୟ ସାହିତ୍ୟ ଏକାଡ଼େମୀର ପୁରସ୍କାର ଦାନ, ଓଡ଼ିଆ ସାହିତ୍ୟର ପ୍ରସାର ଉଦ୍ଦେଶ୍ୟରେ ବହୁ ଓଡ଼ିଆ ସାହିତ୍ୟ ଅଧ୍ୟାପକଙ୍କ ନିଯୁକ୍ତି, ବେତାର ବିଭାଗରେ ସାହିତ୍ୟିକ ମାନଙ୍କୁ ଉତ୍ସାହଦାନ, ଉତ୍କଳ ବିଶ୍ୱବିଦ୍ୟାଳୟର ସାହିତ୍ୟ ପ୍ରସାର ଉଦ୍ଦେଶ୍ୟରେ ଅର୍ଥଦାନ—ଓଡ଼ିଆ ସାହିତ୍ୟର ଅଗ୍ରଗତି ପାଇଁ ଉପରୋକ୍ତ କାରଣ ଗୁଡ଼ିକ ଏଇ ସମୟରେ ହିଁ ଦେଖା ଦେଇଛନ୍ତି । ସୃଷ୍ଟି କରିବା ପାଇଁ ଶିକ୍ଷିତ ମଧ୍ୟବିତ୍ତଶ୍ରେଣୀର

ଏଇ ଆଶା ସହିତ ନିରାଶା ମଧ୍ୟ କମ୍ ପରି ଲକ୍ଷିତ ହେଉନି। ସାମାଜିକ ଜୀବନ ଉପରେଗର ବୈଷମ୍ୟ ଓ ପାରିପାର୍ଶ୍ୱିକ ଅର୍ଥ-ନୈତିକ ଅସାମଞ୍ଜସ୍ୟ ତାର ପ୍ରାଣକୁ ଆଜ ଖରତର ଭାବେ ଆଲୋଡ଼ନ କରୁଛି। ତେଣୁ ନିରାଶାର ଅନ୍ଧକାର ହୃଦୟ ରାଜ୍ୟରେ ଘନୀଭୂତ ହୋଇ ତାର ରଚନାକୁ ବ୍ୟଙ୍ଗ ବିଦ୍ରୂପରେ ଝଙ୍କାରିତ କରିବାକୁ ସମର୍ଥ ହୋଇଛି। କବିତା, ଗଳ୍ପ, ନାଟକ, ଏକାଙ୍କିକା, ଉପନ୍ୟାସ ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗ ଭିତରେ ଲେଖକର ଚିତ୍ତବିପ୍ଳବ ଅପୂର୍ବ ବ୍ୟଙ୍ଗ ବିଦ୍ରୂପର ଆଶ୍ରୟ ନେଇ ତାର ପ୍ରତ୍ୟେକ ରଚନାକୁ ସାର୍ଥକ କରୁଣ ରସ ଭିତ୍ତିଉପରେ ପ୍ରତିଷ୍ଠା କରିଛି। ସାହିତ୍ୟର ଏଇ ସୃଷ୍ଟି ବିଭାଗ ବ୍ୟତୀତ ସମାଲୋଚନା ସାହିତ୍ୟ ଏଇ ସମୟ ମଧ୍ୟରେ ଅତି ଉନ୍ନତ ସ୍ତରକୁ ଚାଲି ଆସିଛି। ଗବେଷଣା ଦ୍ୱାରା ନୂତନ ଉପାଦାନ ଲାଭ ଓ ତାର ବିନିଯୋଗରେ ସମାଲୋଚନାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା, ପରିଶେଷରେ ସେଇ ସମା-ଲୋଚନାକୁ ସୃଷ୍ଟିର ଗୌରବ ପ୍ରଦାନ—ଆଲୋଚ୍ୟ ସମୟରେ ଏଇ ଆଦର୍ଶ ଅନୁସରଣରେ ସମାଲୋଚନା ସାହିତ୍ୟ ପରିବୃଦ୍ଧି ଲାଭ କରୁଛି। ମୂଳତଃ ସାହିତ୍ୟର ଯଥାର୍ଥ ଉନ୍ନତି ପାଇଁ ଆଜ ଯେପରି ଏକ ସର୍ବବ୍ୟାପକ ପ୍ରୟାସର ସଙ୍କେତ ଦେଖା ଦେଇଛି ସେଥିରେ ଏ ସାହିତ୍ୟ ଯେ ଭବିଷ୍ୟତରେ ଯଥେଷ୍ଟ ଅଗ୍ରଗାମୀ ହେବ, ଏପରି ଆଶା ପୋଷଣ କରିବାରେ ଅଯୌକ୍ତିକତା କିଛିନାହିଁ।

## ଉପସଂହାର

ଆଜକୁ ଠିକ୍ ଏକଶତ ବର୍ଷପୂର୍ବେ ଅର୍ଥାତ୍ ୧୮୫୮ ଶାଲରେ ଦକ୍ଷିଣ ପଶ୍ଚିମ ବଙ୍ଗଳା ବିଭାଗର ସ୍କୁଲ ଇନସ୍‌ପେକ୍ଟର ଡକ୍ଟର ଇ: ରୋର ସାହେବ ଓଡ଼ିଶାର ଶିକ୍ଷା ସମ୍ପର୍କରେ କହିଥିଲେ "In

Orissa, where vernacular education, however, has hardly commenced, the poople have, on the whole, no friendly feelings towards it. Almost everywhere they think that we wish to convert them to Christianity by destroying the differences of caste. They consider, as the Deputy Inspector of Balasore expresses it, the Inspectors as disguised Missionaries, and education as a mask, to be thrown off when its purpose has been accomplished. In my opinion, however, this belief does not spontaneously arise among the people having little or no direct intercourse with Europeans. They receive their ideas relative to our measures from the Brahmeans, who, not much better acquainted with us, give them an interpretation in accordance with their ignorance and narrow views. Amongest all of them there exists a deep rooted feeling of suspicion as to the educational measures of Government'' ସେଇ ସମୟଠାରୁ ଆଜି ପର୍ଯ୍ୟନ୍ତ ଯେଉଁ ବିଭିନ୍ନ ଚିନ୍ତାଧାରା, ପାରିପାର୍ଶ୍ୱିକ ଘଟଣାବଳୀ ଓ ଆନ୍ତର୍ଜାତୀୟ ପରିସ୍ଥିତି ଏ ସାହିତ୍ୟର ଗତିପଥ ନିୟନ୍ତ୍ରଣ କରି ଆସିଛନ୍ତି ତାର ଏକ ସ୍ଥୂଳ ପରିଚୟ ଦେବ "ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ" ପୁସ୍ତକ ।

---

ମୁଦ୍ରାକର—ଶ୍ରୀଦିବାକର ମିଶ୍ର, ଗୋସ୍ୱାମୀ ପ୍ରେସ, କଟକ—୨